# BAIGYANIKANKA MAJA KATHA

( Interesting facts regarding Scientists )

By Dr. Gokulananda Mohapatra
Retired Professor of Chemistry
Ravenshaw College, Cuttack

ପ୍ରଥମ ପ୍ରକାଶ ୧୯୮୪
ଦ୍ୱିତୀୟ ମୁଦ୍ରଣ ଅଗଷ୍ଟ ୧୯୮୯
ତୃତୀୟ ମୁଦ୍ରଣ ଏପ୍ରିଲ ୧୯୯୮

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗ୍ରାମସେବକ ସମବାୟ ପ୍ରକାଶନ ଲିଃ
ବାଖରାବାଦ, କଟକ ୭୫୩୦୦୨

ମୂଲ୍ୟ ଟ ୧୫.୦୦

# ମୁଖବନ୍ଧ

"ବୈଜ୍ଞାନିକଙ୍କ ମଜାକଥା" ଏକ ନୂତନ ଧରଣର ବହି । ଏହା ପିଲାମାନଙ୍କୁ ନାନା ଶିକ୍ଷାଦେବା ଉଦ୍ଦେଶ୍ୟରେ ଲେଖାଯାଇଛି । ବିଜ୍ଞାନର ସାଧକ ବୈଜ୍ଞାନିକମାନଙ୍କ ଜୀବନରେ କେତେ ନୂଆ ନୂଆ ଅନୁଭୂତି ହୋଇଛି, କେତେ କଷ୍ଟ ସ୍ୱୀକାର କରି ସେମାନେ ବିଜ୍ଞାନ ସାଧନା କରିଛନ୍ତି, ପ୍ରଥମେ ପ୍ରଥମେ ବୈଜ୍ଞାନିକମାନଙ୍କ ଗବେଷଣାକୁ ଲୋକେ କେମିତି ପରିହାସ କରୁଥିଲେ, ଏହି ସବୁର ଏକ ମନମତାଣିଆ ବିବରଣୀ ଏହି ବହିରେ ଦିଆଯାଇଛି । ଆମ ଛାତ୍ରଛାତ୍ରୀମାନେ ବୈଜ୍ଞାନିକମାନଙ୍କ ଜୀବନୀ ସମ୍ପର୍କୀୟ ନାନା ଘଟଣା ଜାଣି ନାହାନ୍ତି, କାରଣ ସେସବୁ ସେମାନଙ୍କ ଜୀବନୀରେ ଲିପିବଦ୍ଧ ହୋଇ ନାହିଁ । ସେଗୁଡ଼ିକୁ ଲୋକଲୋଚନକୁ ଆଣିବା ପାଇଁ ଏହି ବହିଟିରେ ଚେଷ୍ଟା କରାଯାଇଛି । ପୃଥିବୀର ସର୍ବଶ୍ରେଷ୍ଠ ଗଣିତଜ୍ଞ ତଥା ପଦାର୍ଥ ବିଦ୍ୟାବିତ୍ ଆଲବର୍ଟ ଆଇନଷ୍ଟାଇନ ପିଲାବେଳେ କେମିତି ଗଧ ଥିଲେ, ମାନସାଙ୍କ କରିପାରୁ ନ ଥିଲେ, ପଇସା ହିସାବରେ ଭୁଲକରି ବସ୍ କଣ୍ଡକ୍ଟର ପାଖରୁ ଅପମାନ ପାଇଥିଲେ, ମ୍ୟାଡ଼ାମ କ୍ୟୁରୀ କିଭଳି ପାଠ ପଢ଼ିଲାବେଳେ ପଇସା ଅଭାବରୁ ଖାଲି ଗୋଡ଼ରେ କଲେଜ ଯାଉଥିଲେ, କିରସିନି ଅଭାବରୁ ଲାଇବ୍ରେରୀରେ ପଢୁଥିଲେ, ଏହିଭଳି ବହୁ ନାନା ଶିକ୍ଷଣୀୟ କାହାଣୀ ଏହି ବହିଟିରେ ସନ୍ନିବେଶିତ ହୋଇଛି । ବିଭିନ୍ନ

ବୈଜ୍ଞାନିକଙ୍କ ସମ୍ପର୍କରେ ବହୁ ଅଜଣା କଥା ପାଠକ-ପାଠିକା-ମାନେ ଏହି ବହିଟି ପଢ଼ିଲେ ଜାଣିପାରିବେ । ଏହିସବୁ କାହାଣୀ ଆମ ଛାତ୍ରଛାତ୍ରୀମାନଙ୍କୁ ନାନା ଭାବରେ ଉଦ୍‌ବୁଦ୍ଧ କରିବ ବୋଲି ଆଶା । ଏଥିରୁ ସେମାନେ ନାନାପ୍ରକାର ପ୍ରେରଣା ପାଇ ଭବିଷ୍ୟତରେ ଦକ୍ଷ ବୈଜ୍ଞାନିକ ହେବାକୁ ଚେଷ୍ଟା କରିବେ । ବେଳେବେଳେ ବୈଜ୍ଞାନିକମାନେ ନାନା କଥା ପ୍ରସଙ୍ଗରେ ବହୁ ମଜା ମଜା କଥା କହନ୍ତି, ଯାହାକି ସାଧାରଣଙ୍କ ମନକୁ ବେଶ୍ ଭଲଭାବରେ ପାଏ, ଏହିଭଳି କେତେକ କଥା ଏହି ବହିଟିରେ ଦିଆଯାଇଛି ।

ଆଶା, ବହିଟି ପାଠକ-ପାଠିକା ମହଲରେ ଆଦୃତ ହେବ ।

ଡୋଲମୁଣ୍ଡାଇ
ତା ୩୧ । ୭ । ୮୪

ବିନୀତ
ଲେଖକ

# ବୈଜ୍ଞାନିକଙ୍କ ମଜାକଥା

## ଏକ

ପୃଥିବୀ ବିଖ୍ୟାତ ନୋବେଲ ପୁରସ୍କାର ବିଜେତା ପଦାର୍ଥ ବିଦ୍ୟାବିତ୍ ସାର୍ ଜେ. ଜେ. ଟମ୍ପସନ ପୃଥିବୀ ପ୍ରସିଦ୍ଧ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଥିଲେ । ସେ ଥରେ ଆମେରିକାରୁ ନିମନ୍ତ୍ରଣ ପାଇ ସେଠାରେ ଏକ ବିଶ୍ୱବିଦ୍ୟାଳୟରେ ଭାଷଣ ଦେବାକୁ ଯାଇଥିଲେ । ସେତେବେଳେ ବିଲାତରୁ ଆମେରିକା ଯିବାପାଇଁ ଉଡ଼ାଜାହାଜ ଆଦୌ ନଥିଲା, ଜଳଜାହାଜ ଥିଲା ଏକମାତ୍ର ଯାନ । ପ୍ରିନ୍‌ସଟାଉନ ବିଶ୍ୱବିଦ୍ୟାଳୟରେ ଭାଷଣ ଦେଇ ସେ ଶୀଘ୍ର ଇଂଲଣ୍ଡ ଫେରିବା କଥା । ଫେରିବା ପାଇଁ ନିୟୁୟର୍କରୁ ଆଭିଜାତ୍ୟ-ଭରା ଟ୍ରାନ୍‌ସ କଣ୍ଟିନେଣ୍ଟାଲ ଏକ୍‌ସପ୍ରେସ ଜଳଜାହାଜରେ ତାଙ୍କ ପାଇଁ ସ୍ଥାନ ରିଜର୍ଭ କରାଯାଇଥାଏ । ଏହି ଜାହାଜ ଆମେରିକାର ପଶ୍ଚିମ ଉପକୂଳରୁ ଆସି ନିୟୁୟର୍କ ଦେଇ ଲଣ୍ଡନ ଯାଏ । ବିଶ୍ୱବିଦ୍ୟାଳୟରେ ଭାଷଣ ଦେଉଁ ଦେଉଁ କିଛି ସମୟ ବିଳମ୍ବ ହୋଇଗଲା । ସେଠାରୁ ମୋଟର ଯୋଗେ ନିୟୁୟର୍କ ଆସି ସେଠାରୁ ଜାହାଜ ଧରିବା କଥା, କିନ୍ତୁ ଦେଖାଗଲା ଯେ ସେ ଯେତେ ଦ୍ରୁତତମ ଯାନରେ ଆସିଲେ ମଧ୍ୟ ନିୟୁୟର୍କରୁ ଲଣ୍ଡନ ଅଭିମୁଖେ ଜାହାଜ ଧରିପାରିବେ ନାହିଁ । ତାଙ୍କର ବନ୍ଧୁମାନେ ନିୟୁୟର୍କ ବନ୍ଦରକୁ

ଫୋନ୍ କଲେ ଜାହାଜର କର୍ମକର୍ତ୍ତାମାନଙ୍କ ସହିତ ଏ ବିଷୟରେ କ'ଣ କରାଯାଇ ପାରିବ ଆଲୋଚନା ପାଇଁ । ସାର୍ ଜେ.ଜେ.ଙ୍କର ଜାହାଜ ଧରିବା ନିହାତି ଦରକାର । ଜାହାଜର କର୍ମକର୍ତ୍ତାମାନେ ଶେଷରେ ନିଜ ନିଜ ମଧ୍ୟରେ ଆଲୋଚନା କରି ସାର୍ ଜେ·ଜେ.ଙ୍କୁ ଜଣାଇଦେଲେ ଯେ ସାର୍ ଜେ. ଜେ. ନ୍ୟୁୟର୍କ ବନ୍ଦରରେ ପହଞ୍ଚିବା ପର୍ଯ୍ୟନ୍ତ ଜାହାଜ ଛାଡ଼ିବା ବନ୍ଦ ରଖାଯିବ । ସେମାନେ ଆହୁରି ସୂଚାଇଥିଲେ ଟ୍ରାନ୍ସ କଣ୍ଟିନେଣ୍ଟାଲ ଏକ୍ସପ୍ରେସର ଶହେ ବର୍ଷ ଇତିହାସରେ ଏହା ହେବ ସର୍ବପ୍ରଥମ ଓ ସର୍ବଶେଷ ଘଟଣା । ଅତୀତରେ ଦିନକ ପାଇଁ ଏ ଜାହାଜ କେବେହେଲେ କାହାପାଇଁ ବିଳମ୍ବରେ ଛାଡ଼ିନାହିଁ । ଏପରିକି ଆମେରିକାର ପ୍ରେସିଡେଣ୍ଟଙ୍କ ପାଇଁ ମଧ୍ୟ ଏହା କେବେ ଅଟକି ନାହିଁ । ତେବେ ସାର୍ ଜେ.ଜେ.ଙ୍କ ପାଇଁ ଏହାକୁ ଅଟକାଇ ଦିଆଯିବ । କାରଣ ସାର୍ ଜେ.ଜେ·ଙ୍କ ସମୟର ମୂଲ୍ୟ ପୃଥିବୀର ଯେ କୌଣସି ଲୋକର ସମୟର ମୂଲ୍ୟଠାରୁ ଅଧିକ । ତାଙ୍କୁ ଠିକ୍ ସମୟରେ ଇଂଲଣ୍ଡରେ ପହଞ୍ଚାଇ-ଦେବା ଆମ ସମସ୍ତଙ୍କର ପ୍ରଧାନ କର୍ତ୍ତବ୍ୟ ।

ସାର ଜେ. ଜେ. ବିଳମ୍ବରେ ନ୍ୟୁୟର୍କ ବନ୍ଦରରେ ପହଞ୍ଚି-ଥିଲେ । ତାଙ୍କୁ ଜାହାଜର କର୍ମକର୍ତ୍ତାମାନେ ସାଦରେ ପାଛୋଟି ନେଇଥିଲେ । ସେ ପହଞ୍ଚିବା ପରେ ଜାହାଜ ଛାଡ଼ିଲା । ସେ ଯଥା-ସମୟରେ ଯାଇ ଲଣ୍ଡନରେ ପହଞ୍ଚିଲେ ।

## ଦୁଇ

ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ବୈଜ୍ଞାନିକମାନେ ସାଧାରଣତଃ ଆମ ଦେଶ ଭଳି ଯୋଗସୂତ୍ର ଜରିଆରେ ଭବିଷ୍ୟତ୍‌ବାଣୀ

ବାଛୁଥିଲେ । ପ୍ରେମ କରି ସ୍ତ୍ରୀ ଗ୍ରହଣ କରିବା ପାଶ୍ଚାତ୍ୟ ଦେଶର ବୈଜ୍ଞାନିକମାନଙ୍କ ମଧ୍ୟରେ ସେତେ ଚଳଣି ନ ଥିଲା । ତେବେ କେତେ ବୈଜ୍ଞାନିକ ଯେ ପ୍ରେମ କରି ବାହା ନ ହୋଇଛନ୍ତି ତା' ନୁହେଁ । ପୃଥିବୀ ବିଖ୍ୟାତ ଫରାସୀ ରସାୟନବିତ୍ ଯୋସେଫ ଲୁଇ ଗେଲୁସାକ୍ ତାଙ୍କ ଭାବୀପତ୍ନୀଙ୍କୁ ସେ ନିଜେ ବାଛିଥିଲେ । ସେ ଦିନେ ପ୍ୟାରିସ୍‌ର ଏକ ବଜାର ଦେଇ ରାସ୍ତାରେ ଯାଉଥିଲେ । ସେ ଦେଖିଲେ ଗୋଟିଏ ଦୋକାନରେ ବିକ୍ରୀ କରୁଥିବା ଦାୟିତ୍ୱରେ ଥିବା ସୁନ୍ଦରୀ ଝିଅଟିଏ ଦୋକାନରେ ଗରାଖ ନ ଥିବାରୁ ହାତରେ ଖଣ୍ଡିଏ ରସାୟନବିଜ୍ଞାନ ବହି ଧରି ପଢ଼ୁଛି । ଗେଲୁସାକ୍ କୌତୂହଳୀ ହୋଇ ଝିଅଟି ପାଖକୁ ଯାଇ ପଚାରିଲେ । ସେ ଜାଣିବାକୁ ପାଇଲେ ଝିଅଟି ବିଜ୍ଞାନରେ ଉଚ୍ଚଶିକ୍ଷିତା । ଫରାସୀ ବିପ୍ଳବ ଯୋଗୁଁ ଚାକିରି ହରାଇ ସେହି ଦୋକାନରେ ସେଲ୍‌ସଗାର୍ଲ ଭାବରେ ଚାକିରି କରୁଛି । ଝିଅଟି ପ୍ରତି ଗେଲୁସାକ୍ ଏତେ ପ୍ରୀତ ହୋଇପଡ଼ିଲେ ଯେ ସେ ତାଙ୍କୁ ନିଜର ସ୍ତ୍ରୀ ବୋଲି ସେହିଦିନ ସେହିଠାରେ ସେହି ମୁହୂର୍ତ୍ତରେ ହିଁ ବାଛିଲେ । ବିଜ୍ଞାନ ଗ୍ରନ୍ଥଗୁଡ଼ିକ-ମାନେ ଯେଉଁ ଗେଲୁସାକ୍‌ଙ୍କ କଥା ସେମାନଙ୍କ ରସାୟନବିଜ୍ଞାନ ବହିରେ ପଢ଼ନ୍ତି, ଇଏ ହେଉଛନ୍ତି ସେହି ଗେଲୁସାକ୍ ।

## ତିନି

ଦିନେ ଦେଖାଗଲା ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନ୍ ତାଙ୍କ ପକେଟରୁ ଗୋଟିଏ ଚେକ୍ ବାରମ୍ବାର କାଢ଼ୁଥାନ୍ତି ଓ ଚେକ୍‌ଟିକୁ କିଛି ସମୟ ଦେଖି ପୁଣି ପକେଟରେ ରଖିଦେଉଥାନ୍ତି । ତାଙ୍କୁ ସେହି ଚେକ୍‌ଟି କେମିତି କେମିତି ଅସ୍ୱାଭାବିକ ଜଣା ପଡୁଥିଲା । ତାଙ୍କୁ ପଚାରିଗଲାରୁ ସେ କହିଲେ,

ସେ ଆପେକ୍ଷିକ ତତ୍ତ୍ୱ ଉପରେ ପ୍ରବନ୍ଧଟିଏ ଲେଖି ସେହି ଚେକ୍‌ରେ ନିଜର ପାରିଶ୍ରମିକ ପାଇଛନ୍ତି । ବିଲାତର ପ୍ରସିଦ୍ଧ ସମ୍ବାଦପତ୍ର ମାଞ୍ଚେଷ୍ଟର ଗାର୍ଡ଼ିଆନ ତାଙ୍କୁ ଲେଖାଟି ପାଇଁ ଅନୁରୋଧ ଜଣାଇଥିଲେ ଓ ସେଥିପାଇଁ ତାଙ୍କୁ ପାଞ୍ଚପାଉଣ୍ଡ ଇଂରାଜୀ ମୁଦ୍ରା ପାରିଶ୍ରମିକ ଦେବାପାଇଁ ଅଙ୍ଗୀକାର କରିଥିଲେ । ସେହି ପ୍ରବନ୍ଧ ଯୋଗୁ ତାଙ୍କ କାଗଜର କାଟ୍‌ତି ବଢ଼ିଯିବାରୁ ସେ ଯାହା ଅଙ୍ଗୀକାର କରିଥିଲେ ତାହାର ଦୁଇଗୁଣ ପାରିଶ୍ରମିକ ପଠାଇ ଦେଇଥିଲେ । କେତେକ ପଚାରିଲେ, "ତେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ବହୁ ଲୋକ ତ ପତ୍ରପତ୍ରିକାରେ ଲେଖନ୍ତି ଓ ପାରିଶ୍ରମିକ ପାଆନ୍ତି !"

କିନ୍ତୁ ଆଇନ୍‌ଷ୍ଟାଇନ ହଠାତ୍ ଚିନ୍ତିତ ହୋଇ କହିଲେ, "ସେ ଜୀବନରେ ବହୁ ପ୍ରବନ୍ଧ ଲେଖିଛନ୍ତି ଓ ହଜାର ହଜାର ପାଉଣ୍ଡ ପାରିଶ୍ରମିକ ପାଇଛନ୍ତି, କିନ୍ତୁ କେବେ ସେ ଅଙ୍ଗୀକାର କରାଯାଇଥିବା ମୁଦ୍ରାଠାରୁ ଅଧିକ ପ୍ରାପ୍ୟ ପାଆନ୍ତି ନାହିଁ । ମାଞ୍ଚେଷ୍ଟର ଗାର୍ଡ଼ିଆନ କାଗଜ ଅଙ୍ଗୀକାର କରିଥିବା ପରିମାଣଠାରୁ ଦୁଇଗୁଣ ଅଧିକ ଦେଇଥିବାରୁ ସେ ଆଶ୍ଚର୍ଯ୍ୟ ହେଉଛନ୍ତି ।"

## ଚୋର

ନୋବେଲ ପୁରସ୍କାର ବିଜେତା ଡକ୍ଟର ଆଲବର୍ଟ ସ୍ୱାଇଜର ଆଫ୍ରିକାରେ ଥିବା ସମୟରେ ସେ ତାଙ୍କ ଗବେଷଣାଗାର ତିଆରି କରାଉଥିଲେ । ଏହି ସମୟରେ ହଠାତ୍ ଏକ ପ୍ରଚଣ୍ଡ ଝଡ଼ ଆସିଲା । କାଠପଟାଗୁଡ଼ିକ ଠିକ୍ ଭାବରେ କାନ୍ଥରେ ନ ଲାଗିଲେ ଝଡ଼ ସେଗୁଡ଼ାକ ଉଡ଼ାଇନେବ । ଏହି ଭୟରେ ଆଲବର୍ଟ ନିଜ ଗବେଷଣା

ଗୁଡ଼ ମିସ୍ତ୍ରୀମାନଙ୍କୁ ସାହାଯ୍ୟ କରିବା ପାଇଁ ଲାଗିପଡ଼ିଲେ । ତାଙ୍କ ପାଖରେ ଜଣେ ସଫା ପୋଷାକ ପିନ୍ଧିଥିବା ଭଦ୍ରଲୋକ ବସିଥିଲେ । ଆଲବର୍ଟ ଯେତେବେଳେ ଉଠି କାନ୍ଥରେ ପଟାସବୁ ଲଗାଇବାକୁ ଲାଗିଲେ, ସେ ପାଖରେ ବସିଥିବା ଭଦ୍ରଲୋକଟିକୁ ଟିକିଏ ସାହାଯ୍ୟ କରିବା ପାଇଁ ଡାକିଲେ । ଭଦ୍ରଲୋକଟି ଆଲବର୍ଟଙ୍କ ଅନୁରୋଧରେ ଉଠିବେ କ'ଣ, ନିଜ ସ୍ଥାନରେ ସେମିତି ସ୍ଥିରହୋଇ ବସି ରହିଲେ । ପୁଣି ଥରେ ଅନୁରୋଧ ଆସିବାରୁ କହିଲେ, "ମୁଁ ଜଣେ ଉଚ୍ଚ ସମ୍ମାନାସ୍ପଦ ଲୋକ । ପଟା ଉଠାଇବା ମୋ ସମ୍ମାନର ବାହାରେ ।"

ଏହା ଶୁଣି ଆଲବର୍ଟ ଈଷତ୍ ହସି କହିଲେ, "ଓଃ, ମୁଁ ବି ତୁମ ଭଳି ଜଣେ ବିଜ୍ଞ ସମ୍ମାନାସ୍ପଦ ବ୍ୟକ୍ତି ହେବାକୁ ଚାହୁଁଥିଲି, କିନ୍ତୁ ପାରିଲି ନାହିଁ । କାରଣ ଏହି ଆସୁଥିବା ଝଡ଼ ମୋତେ ତାହା କରାଇଦେଲାନି ।"

## ପାଞ୍ଚ

ବିଜ୍ଞାନ ଜଗତରେ ଟିଣ୍ଡେଲ ପ୍ରଭାବର ଆବିଷ୍କର୍ତ୍ତା ଜନ୍ ଟିଣ୍ଡେଲ ଓ ପୃଥିବୀ ପ୍ରସିଦ୍ଧ ବିବର୍ତ୍ତନବାଦର ଜନକ ଚାର୍ଲସ ଡାରଉଇନ୍ ୧୮୫୩ ମସିହାରେ ରୟେଲ ସୋସାଇଟିର ସ୍ୱର୍ଣ୍ଣପଦକ ପାଇଁ ବଛାଗଲେ । ଟିଣ୍ଡେଲ ପଦାର୍ଥ ବିଜ୍ଞାନରେ ଓ ଡାରଉଇନ ଜୀବବିଜ୍ଞାନରେ ଏହି ପୁରସ୍କାର ପାଇବେ । ଏହି ଖବର ଯେତେବେଳେ ଜଣାପଡ଼ିଲା ଦଳେ ବୈଜ୍ଞାନିକ ଏହାର ବିରୋଧ କଲେ । ସେମାନେ କହିଲେ, ଟିଣ୍ଡେଲଙ୍କ ଆବିଷ୍କାର ତାଙ୍କ ନିଜସ୍ୱ ନୁହେଁ, ସେ ଜର୍ମାନୀରେ ଥିବା ସମୟରେ ସେଠାକାର ପଦାର୍ଥ

ବିଜ୍ଞାନବିତ୍‌ମାନଙ୍କ ସହାୟତାରେ ସେ ଏହାକୁ ଆବିଷ୍କାର କରିଥିଲେ । ଟିଣ୍ଡେଲ ଏଥିରେ କ'ଣ କରିବେ ଠିକ୍ କରିପାରିଲେ ନାହିଁ । ସେ ତାଙ୍କ ବନ୍ଧୁ ଇଂଲଣ୍ଡର ଅନ୍ୟତମ ବିଶିଷ୍ଟ ବୈଜ୍ଞାନିକ ମାଇକେଲ ଫାରାଡ଼େଙ୍କ ମତ ଲୋଡ଼ିଲେ । ଫାରାଡ଼େଙ୍କ ପରାମର୍ଶ କ୍ରମେ ସେ ସ୍ୱର୍ଣ୍ଣପଦକ ଗ୍ରହଣ କରିବାକୁ ନିଜ ଅନିଚ୍ଛା ପ୍ରକାଶକଲେ ।

ସେ କହିଲେ, "ଯେଉଁ ସ୍ୱର୍ଣ୍ଣପଦକ ପାଇଁ ମତାନୈକ୍ୟ ହୋଇପାରିଲା ନାହିଁ, ସେହି ସ୍ୱର୍ଣ୍ଣପଦକକୁ ସେ କଦାପି ଗ୍ରହଣ କରିବେ ନାହିଁ ।

## ଛଅ

ଥରେ ଇଂଲଣ୍ଡର ବିଖ୍ୟାତ ଗଣିତଜ୍ଞ ତଥା ସୁପ୍ରସିଦ୍ଧ ଚାର୍ଲସ ଡାରଉଇନଙ୍କ ପୁଅ ଜର୍ଜ ଡାରଉଇନଙ୍କ ଘରୁ ନିମନ୍ତ୍ରଣ ପାଇ ସାର୍ ବାରଟ୍ରେଣ୍ଡ ରସେଲ ମଧ୍ୟାହ୍ନ ଭୋଜନ କରିବାକୁ ଯାଇଥିଲେ । ସେ ଯାଇ ପହଞ୍ଚିଲା ବେଳକୁ ଦେଖିଲେ ଯେ ଜର୍ଜ ଓ ତାଙ୍କ ଅନ୍ୟତମ ବୈଜ୍ଞାନିକ ବନ୍ଧୁ ସାର୍ ରବର୍ଟ ହିଲ ଗୋଟିଏ ପ୍ରକାର ହିସାବ କରିବା ଯନ୍ତ୍ରକୁ ଏପଟ ସେପଟ କରୁଛନ୍ତି । ଯେତେ ମୋଡ଼ାମୋଡ଼ି କଲେ ବି ଯନ୍ତ୍ର ଚାଲୁ ନାହିଁ । ରସେଲ ମଧ୍ୟ ସେଥିରେ ଯୋଗଦେଲେ । ପୃଥିବୀର ତିନିଜଣ ଶ୍ରେଷ୍ଠ ବୈଜ୍ଞାନିକ ଅକୃତକାର୍ଯ୍ୟ ହୋଇ ବସି ଚିନ୍ତା କରିବାକୁ ଲାଗିଲେ, ସେମାନଙ୍କର କେଉଁଠି ଭୁଲ ରହିଯାଉଛି । କାଗଜକଲମ ଆଣି ଜଣ ଜଣକା ଯନ୍ତ୍ରର ଛବି ଆଙ୍କି କାର୍ଯ୍ୟକାରୀ ପ୍ରଣାଳୀର ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ, କିଛି ସିଦ୍ଧାନ୍ତରେ ପହଞ୍ଚି ପାରିଲେନି । ତିନିଜଣ ଚୁପ୍ ହୋଇ ବସିଥାନ୍ତି, ସେହି ଘରକୁ ପଶିଆସିଲେ ଜର୍ଜ ଡାରଉଇନ୍‌ଙ୍କ

ପତ୍ନୀ, ମାର୍କିନ୍ ମହିଳା ମିସେସ୍ ଡାଉଜଲିନ । ସେମାନଙ୍କ ଅକାମୀ ଯନ୍ତ୍ରକୁ ଦେଖି ହସିକରି କହିଲେ, "ଟିକିଏ ତେଲ ଦେଇଦିଅ, ଯନ୍ତ୍ର ଚାଲିବ । ତେଲ ଅଭାବରୁ ସେ ଯନ୍ତ୍ର କଳଙ୍କି ଯୋଗୁଁ କେଉଁଠି ଅଟକି ଯାଇଛି ।" ସତକୁ ସତ ତେଲ ଦେବାରୁ ଯନ୍ତ୍ର ଠିକ୍ ଚାଲିଲା ।

## ସାତ

ଊନବିଂଶ ଶତାବ୍ଦୀରେ ଉଇଲିୟମ ଫର୍ଗୁସନ ଇଂଲଣ୍ଡର ପ୍ରସିଦ୍ଧ ସର୍ଜନ ଭାବରେ ଖ୍ୟାତି ଲାଭ କରିଥିଲେ । ସେ ବିଖ୍ୟାତ ଚିକିତ୍ସକ ରବର୍ଟ ଲିଷ୍ଟରଙ୍କ ସହକାରୀ ଥିଲେ ।

ଲଣ୍ଡନର କିଙ୍ଗ୍ସ କଲେଜ ହସପିଟାଲରେ ସେ ଥରେ ଗୋଟିଏ ଅପରେସନ କଲେ । ଅପରେସନ ଦେଖିବାକୁ ବହୁ ହୋଇ ଆସିଥିବା ଡାକ୍ତରମାନେ ଗେଲେରୀରେ ବସିଥିଲେ । ଏହି ଅପରେସନଟି ଖୁବ୍ ଦକ୍ଷତାର ସହିତ ଓ କମ ସମୟ ମଧ୍ୟରେ ସେ ସମ୍ପାଦନ କରିଥିବାରୁ ଦର୍ଶକମାନେ ତାଙ୍କୁ ବଧାଇ ଜଣାଇବାକୁ ଅପରେସନ ପରେ କରତାଳି ଦେଲେ । ଫର୍ଗୁସନ ଖୁସୀହୋଇ ସାଧାରଣ ଅଭିନେତାମାନଙ୍କ ଭଳି ବାରମ୍ବାର ନତମସ୍ତକ କରି ସେହି ସମ୍ମାନକୁ ଗ୍ରହଣ କଲେ ।

କିଛିଦିନ ପରେ ଠିକ୍ ସେହି ଗୃହରେ ତାଙ୍କ ଗୁରୁ ରବର୍ଟ ଲିଷ୍ଟର ସେହିଭଳି ଏକ ଅପରେସନ ଖୁବ୍ ଅଳ୍ପ ସମୟ ଭିତରେ ଦକ୍ଷତାର ସହିତ ସମ୍ପାଦନ କଲେ । ଦର୍ଶକ ଗ୍ୟାଲେରୀରୁ ଯେତେବେଳେ ତାଙ୍କୁ ବଧାଇ ଦେବାପାଇଁ କରତାଳି ଆସିଲା, ସେ ହଠାତ୍ ପାଟିକରି ଉଠିଲେ, "ମହାଶୟ, ମନେରଖନ୍ତୁ, ଆପଣମାନେ କେଉଁଠି କରତାଳି ଦେଉଛନ୍ତି । ଏହା ଅଭିନୟ ଥିଏଟର ନୁହେଁ, ଏହା ଅପରେସନ ଥିଏଟର ।"

## ଆଠ

ମେଡ଼େମ କଉରୀ ଦୁଇ ଦୁଇଥର ନୋବେଲ ପୁରସ୍କାର ପାଇବା ପରେ ଥରେ ଭାରତ ବୁଲି ଆସିଥିଲେ । ସେ ଆସି ଦିଲ୍ଲୀରେ ଭାରତର ପ୍ରସିଦ୍ଧ ବୈଜ୍ଞାନିକ ସାର୍ ଶାନ୍ତିସ୍ୱରୂପ ଭାଟନଗରଙ୍କ ଘରେ ଅତିଥି ହୋଇଥିଲେ । ଦିନେ ମେଡ଼େମ କଉରୀ ଭାଟନଗରଙ୍କ ଘରେ ଭାରତୀୟ ରନ୍ଧା ଖାଇବା ପାଇଁ ଇଚ୍ଛା ପ୍ରକାଶ କଲେ । ଏକଥା ଭାଟନଗର ତାଙ୍କ ସ୍ତ୍ରୀ ଲଜବନ୍ତୀଙ୍କୁ ଜଣାଇଦେଲେ । କି ଭାରତୀୟ ଖାଦ୍ୟ ତିଆରିକରି ମେଡ଼େମ୍ କଉରୀଙ୍କୁ ଖୁଆଇବେ, ତାହା ହେଲା ଲଜବନ୍ତୀଙ୍କ ପ୍ରଧାନ ଚିନ୍ତା । ସେ ଭାବିଭାବି ପୁରୀ, ତରକାରୀ ତିଆରି କଲେ ମେଡ଼େମ କଉରୀଙ୍କ ପାଇଁ । ମେଡ଼େମ କଉରୀ ଲାଲକିଲ୍ଲା ଆଦି ଦେଖି ଫେରିଆସିଲା ପରେ ଯେତେବେଳେ ଲଜବନ୍ତୀ ଫୁଲିଲା ଫୁଲିଲା ପୁରି ସବୁ ଖାଇବା ଟେବୁଲ ଉପରେ ସଜାଇଦେଲେ, ମେଡ଼େମ କଉରୀ ସେଥିରୁ ଗୋଟିଏ ଧରି ଏପଟ ସେପଟ କରିବାକୁ ଲାଗିଲେ ଓ ମନେ ମନେ ଭାବିବାକୁ ଲାଗିଲେ, ଏହା ଭିତରକୁ ପବନ କେମିତି ଗଲା ? ଖାଉଁ ଖାଉଁ ଭାଟନଗରଙ୍କୁ କହିଲେ ଯେ ସେ ଭାରତ ଛାଡ଼ିବା ପୂର୍ବରୁ କେଉଁ ଯନ୍ତ୍ର ସାହାଯ୍ୟରେ ପୁରି ଭିତରକୁ ପବନ କେମିତି ପୂରାଯାଉଛି ସେ ତାଙ୍କୁ ଦେଖାଇବାକୁ ଯେମିତି ନ ଭୁଲନ୍ତି ।

## ନଅ

ଖ୍ରୀଷ୍ଟମାସ ପର୍ବ ଆସିବା ପୂର୍ବରୁ ଆମେରିକାର ଏକ ରୀତି ହେଉଛି ଯେ ପିଲାମାନେ ଘର ଘର ବୁଲି ଖ୍ରୀଷ୍ଟମାସ ଗୀତ ଗାଆନ୍ତି । ଗୀତ ଗାଇସାରିଲେ ଯାହା ଘରଠାରେ ଗୀତ

ଗାଆଯାଏ, ସେ ପିଲମାନଙ୍କୁ କିଛି ମୁଦ୍ରା ଦେଇ ବିଦାୟ ଦିଅନ୍ତି । ଏକଥା ଆଇନଷ୍ଟାଇନଙ୍କୁ ଜଣା ନ ଥିଲା । ସେ ଯେତେବେଳେ ଆମେରିକାର ପ୍ରିନସ୍‌ଟନ ସହରରେ ରହୁଥିଲେ, ଥରେ ଦଳେ ପିଲା ସେଦ୍ୱିପରି ଆସି ତାଙ୍କ ଦୁଆରେ ଖ୍ରୀଷ୍ଟମାସ ଗୀତ ବୋଲିଲେ । ଆଇନଷ୍ଟାଇନ୍ ସେମାନଙ୍କ ଗୀତ ଶୁଣିବା ପାଇଁ ବାହାରକୁ ଆସିଲେ । ପିଲାମାନେ ଯେମିତି ଗୀତ ବୋଲି-ସାରିଲେ ସେ ଧନ୍ୟବାଦ ଦେଇ ଘର ଭିତରକୁ ଚାଲିଗଲେ । କିଛି ସମୟ ପରେ ପୁଣି ସେ ଯେତେବେଳେ ବାହାରକୁ ଆସନ୍ତି; ଦେଖନ୍ତି ପିଲାମାନେ ସେମିତି ଠିଆ ହୋଇଛନ୍ତି । ସେମାନେ କାହିଁକି ଠିଆ ହୋଇଛନ୍ତି ବୋଲି ପଚାରିଲେ । ପିଲାମାନେ କହିଲେ ସେମାନେ ଯାହାଙ୍କ ଘରେ ଗୀତ ବୋଲନ୍ତି, ଘରର ମାଲିକ ସେମାନଙ୍କୁ କିଛି ଅର୍ଥ ପୁରସ୍କାର ଦିଅନ୍ତି । ଏହା ଶୁଣି ଆଇନଷ୍ଟାଇନ୍ କହିଲେ "ଆଁ ଏମିତି କଥା, ଟିକିଏ ଅପେକ୍ଷା କର, ମୁଁ ଆସୁଛି ।" ଏହା କହି ଆଇନଷ୍ଟାଇନ୍ ଘର ଭିତରକୁ ପଶିଲେ । ପିଲାମାନେ ଭାବିଲେ ଆଇନଷ୍ଟାଇନ୍ ଏଥର କିଛି ମୁଦ୍ରା ଆଣି ସେମାନଙ୍କୁ ଉପହାର ଦେବେ । କିଛି ସମୟପରେ ଆଇନ୍-ଷ୍ଟାଇନ୍ ବେକରେ ତାଙ୍କ ଅତି ପ୍ରିୟ ବେହେଲା ପକାଇ ବାହାରି ଆସିଲେ । କହିଲେ—"ଦେଖ ପିଲାଏ, ମୁଁ ତୁମମାନଙ୍କ ସଙ୍ଗରେ ଘର ଘର ବୁଲି ବେହେଲା ବଜାଇବି । ତୁମେମାନେ ଗୀତ ଗାଇବ । ଦେଖ, ଯାହା ପାଇବ ମୋତେ ଏକା ଅଧେ ଦେବ ।"

## ଦଶ

ବଡ଼ ବଡ଼ ବୈଜ୍ଞାନିକମାନେ ବହୁ ସମୟରେ ଅନ୍ୟମନସ୍କ ରହିବା ଏକ ମାମୁଲି ଘଟଣା । ସେମାନେ ସେମାନଙ୍କ ଆବିଷ୍କାର

ନେଇ ଏତେ ଭାବନ୍ତି ଯେ ଭାବବାର କିଛି ସ୍ଥାନ କାଳପାତ୍ର ନ ଥାଏ । ଏଣେ ଗୋଟିଏ କାମ କରୁଥିବେ, ତେଣେ ଆଉ ଗୋଟିଏ ବିଷୟରେ ଭାବୁଥିବେ ।

ଜର୍ମାନ ବୈଜ୍ଞାନିକ ପଲ୍ ଏଲରିଚ ଯେ ହେଉଛନ୍ତି ଆଧୁନିକ ରସାୟନ ଚିକିତ୍ସାର ଜନକ, ଯାହାଙ୍କ ଯୋଗୁଁ ବର୍ତ୍ତମାନର ରସାୟନିକ ଔଷଧ ସାହାଯ୍ୟରେ ଚିକିତ୍ସାର ପ୍ରସାର ଚାଲିଛି, ସେ ସେମିତି ବୈଜ୍ଞାନିକମାନଙ୍କ ଭିତରୁ ଜଣେ । ପଲ ଏଲରିଚ ସକାଳେ ଓ ସନ୍ଧ୍ୟା ସମୟରେ ବୁଲିଯାନ୍ତି ଓ ସଙ୍ଗରେ ଗୋଟିଏ ବାଡ଼ି ସଦାସର୍ବଦା ନେଇଥାନ୍ତି । ଭ୍ରମଣରୁ ଫେରି ବାଡ଼ିକୁ ଘର କୋଣରେ ଥୋଇଦେଇ ନିଜେ ଘରର ଖଟ ଉପରେ କିଛି ସମୟ ପାଇଁ ଗୋଡ଼ହାତ ସଳଖ କରି ପଡ଼ିଯାଆନ୍ତି । ଏହା ତାଙ୍କର ଏକ ନିତ୍ୟନୈମିତ୍ତିକ ଅଭ୍ୟାସ । ଦିନେ ଦିନେ ସନ୍ଧ୍ୟାରେ ଭ୍ରମଣ ବେଳେ ନିଜେ ଗବେଷଣା ସମ୍ପର୍କରେ ଭାବୁଭାବୁ ଏତେ ଅନ୍ୟମନସ୍କ ହୋଇପଡ଼ନ୍ତି ଯେ ଏଥିରେ ନାନାପ୍ରକାର ବ୍ୟତିକ୍ରମ ଦେଖାଯାଏ ।

ଦିନେ ଏଲରିଚ ସନ୍ଧ୍ୟାବେଳେ ବୁଲିଯାଇଥିଲେ । ଫେରିଲା ବେଳେ ସେ ତାଙ୍କ ଗବେଷଣା ସମ୍ପର୍କୀୟ କ'ଣ ଏକ ସମସ୍ୟା ନେଇ ଭାବୁଥିଲେ । ସେ ଭାବି ଭାବି ଅନ୍ୟମନସ୍କ ଭାବେ ଘରକୁ ପଶିଆସି ଘର କୋଣରେ ବାଡ଼ି ନ ରଖି ଖଟ ଉପରେ ବାଡ଼ିଟିକୁ ଶୁଆଇଦେଇ ନିଜକୁ ବାଡ଼ି ବୋଲି ଘର କୋଣରେ ଠିଆହୋଇ ରହିଲେ । ବହୁତ ସମୟ ପରେ ଯେତେବେଳେ ସେ ନିଜ ଭାବନା ରାଜ୍ୟରୁ ଫେରିଆସି ପ୍ରକୃତିସ୍ଥ ହେଲେ, ଦେଖିଲେ ସେ ଘର କୋଣରେ ବାଡ଼ିଟିକୁ ନ ରଖି ନିଜେ ଠିଆ ହୋଇଛନ୍ତି । ନିଜ ଭୁଲ ବୁଝିପାରି ଯାଇ ଖଟ ଉପରେ ବସିଲେ ।

ପରି ଏଲବିଟଙ୍କର ସାଂସାରିକ କଥା କିଛି ମନେ ରହେ ନାହିଁ । ମନେକର, ଆସନ୍ତାକାଲି ଅମୁକେଇ କାମଟା କରିବାକୁ ପଡ଼ିବ । ସେ ଭୁଲିଯାନ୍ତି, କରିପାରନ୍ତି ନାହିଁ । ତେଣୁ ଆସନ୍ତାକାଲି କିଛି କାମ କରିବାକୁ ଥିଲେ ସେ ଅମୁକେଇ କାମଟା କରିବା ପାଇଁ ସଙ୍ଗେ ସଙ୍ଗେ ନିଜ ପାଖକୁ ଚିଠି ଲେଖି ଡାକ ବାକ୍ସରେ ପକାଇ ଦିଅନ୍ତି । ତହିଁ ଆରଦିନ ଚିଠି ଡାକରେ ଆସି ତାଙ୍କଠାରେ ପହଞ୍ଚିଗଲେ ତାଙ୍କର ସେ କାମ କଥା ମନେ ପଡ଼ିଯାଏ । ସେଥିରୁ ସେ କାମ କଥାଟା ଜାଣନ୍ତି ଓ କରନ୍ତି । ତାଙ୍କ ଜୀବନରେ ସେ ନିଜଠାକୁ ଏହିଭଳି କେତେ ଯେ ଚିଠି ଲେଖିଛନ୍ତି ତାର କଳନା ନାହିଁ ।



# ଦ୍ୱିତୀୟ ଅଧ୍ୟାୟ

## ଏକ

ପଲ୍ ଏଲ୍‌ରଚଙ୍କ ଭଳି ଆଉ ଜଣେ ବୈଜ୍ଞାନିକ ହେଉଛନ୍ତି ସାର ଆଇଜାକ୍ ନିଉଟନ । ସେ ଅଧି ଅନେକ ସମୟରେ ଅନ୍ୟମନସ୍କ ରହନ୍ତି । ଗୋଟିଏ କାମ କରୁଁ କରୁଁ ଯଦି ନିଜ ବୈଜ୍ଞାନିକ ଗବେଷଣା କଥା ଭାବନ୍ତି, ସେ ନିଜ କାମ କଥା ପୂରାପୂରି ଭୁଲିଯାନ୍ତି । ପିଲାଟି ଦିନରୁ ନିଜ ଭାବନାରେ ଏଭଳି ଭାବରେ ମଜ୍ଜି ରହିବା ତାଙ୍କର ଏକ ଅଦ୍ଭୁତ ଅଭ୍ୟାସ ଥିଲା । ଦିନେ ତାଙ୍କ ବାପା ଘୋଡ଼ାର ଲଗାମ ଲଗାଇ ନିଉଟନଙ୍କ ହାତରେ ତାଙ୍କ ଚାଷକ୍ଷେତକୁ ପଠାଇଥିଲେ । ଚାଷକ୍ଷେତରେ ମୂଲିଆମାନେ କାମ କରୁଥାନ୍ତି । ଘୋଡ଼ା ସେଠାକୁ ଗଲେ ହଳ କରିବ । ନିଉଟନ୍ ଘୋଡ଼ାର ଲଗାମ ଧରି ଆଗେ ଆଗେ ଚାଲିଛନ୍ତି । ପଛରେ ଘୋଡ଼ା ଚାଲିଛି । ଏଭଳି ଚାଲୁ ଚାଲୁ ସେ ନିଜର ଏକ ଗବେଷଣା ଉପରେ ଭାବିବାକୁ ଆରମ୍ଭ କରିଦେଲେ । ସେ ଏହି ଭାବନାରେ ଏତେ ମଜ୍ଜିଗଲେ ଯେ ତାଙ୍କ ଲଗାମରୁ ଘୋଡ଼ା କେତେବେଳେ ଖସି ଘରକୁ ପଳାଇ ଗଲାଣି ତାଙ୍କୁ ଜଣା ନାହିଁ । ସେ ସେହିଭଳି ଲଗାମ ଧରି ଚାଲିଛନ୍ତି । ଏଣେ ଘୋଡ଼ା ଆସି ଘରେ । ସେ ଚାଷକ୍ଷେତରେ ତାଙ୍କ ମୂଲିଆଙ୍କୁ ଯେତେବେଳେ

ଲଗାମ ବଢ଼ାଇଦେଲେ, ମୂଲିଆ ଖାଲି ଲଗାମ ଦେଖି ଅବାକ୍ । ଘୋଡ଼ା ଗଲା କୁଆଡ଼େ, ମୂଲିଆ ଘୋଡ଼ା କଥା ପଚାରିବାରୁ ସେ ହଠାତ୍ ପ୍ରକୃତିସ୍ଥ ହୋଇ ଘୋଡ଼ା କୁଆଡ଼େ ଗଲା ଭାବିଲା ବେଳକୁ ତାଙ୍କ ମୁଣ୍ଡରେ ସମାଧାନ ହୋଇ ଆସୁଥିବା ବୈଜ୍ଞାନିକ ବିଷୟଟି ହଠାତ୍ ଉଭେଇଗଲା ।

## ଭୁଲି

ବୈଜ୍ଞାନିକ ଆଇନଷ୍ଟାଇନ୍ ସେହିଭଳି ଭାବନାରେ ରତ ରହି ପାରୁଥିଲେ । ତାଙ୍କର ଏକ ବିଶେଷତ୍ୱ ଥିଲା ସେ ଚାଲୁଁ ଚାଲୁଁ କିଛି କାମ କରିବା ପାଇଁ ହେଲେ ଭାବନାକୁ ପୂରାପୂରି ବନ୍ଦକରି କାର୍ଯ୍ୟ ଭିତରକୁ ଚାଲିଆସନ୍ତି ଓ କାର୍ଯ୍ୟ ସରିଗଲେ ପୁଣି ଭାବନା ରାଜ୍ୟକୁ ଫେରିଯାଆନ୍ତି । ଠିକ୍ ଯେଉଁଠି ବନ୍ଦ କରିଥାନ୍ତି ଠିକ୍ ସେଇଠୁ ପୁଣି ଭାବନା ଆରମ୍ଭ କରନ୍ତି । ଅଧିକାଂଶ ଗବେଷଣା ତାଙ୍କର ଏହି ଭାବନା ଭିତରେ ହିଁ ଚାଲେ । ସେ ଯେଉଁଠି ବସନ୍ତି ସେଠି ଭାବନା ରାଜ୍ୟରେ ମଜ୍ଜି ଯାଇ ନିଜେ ଗବେଷଣା ଆରମ୍ଭ କରିଦିଅନ୍ତି । ସେ ଯେଉଁ ଅବସ୍ଥାରେ ରହିଲେ ମଧ୍ୟ ଭାବନା ଭିତରେ ଗବେଷଣାରେ ଆଗେଇଯାଆନ୍ତି । ଥରେ ତାଙ୍କର ଜଣେ ବନ୍ଧୁ ତାଙ୍କୁ ଗୋଟିଏ ସ୍ଥାନରେ ଅପେକ୍ଷା କରିବା ପାଇଁ ସମୟ ଦେଇଥାନ୍ତି । କହିଥାନ୍ତି ସେ ଆସୁ ଆସୁ କିଛି ଡେରି ହୋଇ ଯାଇପାରେ, ତେଣୁ ସେ ବ୍ୟସ୍ତ ନ ହୋଇ ତାଙ୍କୁ ଅପେକ୍ଷା କରି ରହିଥିବେ । ସେଥିପାଇଁ ସେ ଯଦି ବୋର୍ ହୁଅନ୍ତି ତେବେ ସେ ଯେମିତି କିଛି ମନେ କରନ୍ତି ।

ଆଇନ୍‌ଷ୍ଟାଇନ୍ ତାଙ୍କୁ ବ୍ୟସ୍ତ ନହେବାକୁ କହିଲେ । କହିଲେ ସେ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିପାରିବେ । ସେ ମୋଟେ

ବୋର୍ ହେବେନି, କି ତାଙ୍କର କିଛି ଅସୁବିଧା ହେବନି । ସେ ସେପରି ଅପେକ୍ଷା କରୁଁ କରୁଁ ନିଜ ଗବେଷଣା ଆରମ୍ଭ କରିଦେବେ, ଫଳରେ ସମୟୁଟା କୁଆଡ଼େ କଟିଯିବ, ତାଙ୍କୁ ଜଣାପଡ଼ିବ ନାହିଁ ।

## ତିନି

ପୃଥିବୀ ବିଖ୍ୟାତ ଇଂରେଜ ଦାର୍ଶନିକ ଆଲଡ଼ସ ହକ୍‌ସଲେଙ୍କ ଭାଇ ହେଉଛନ୍ତି ଜୁଲିୟାନ ହକ୍‌ସଲେ । ସେ ମଧ୍ୟ ଜଣେ ପୃଥିବୀ ପ୍ରସିଦ୍ଧ ପ୍ରାଣୀବିଜ୍ଞାନବିତ୍ । ଆମ ଓଡ଼ିଶାର ବିଶିଷ୍ଟ ନେତା ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ ଯେଉଁ କଳିଙ୍ଗ ପୁରସ୍କାର ପ୍ରତିଷ୍ଠା କରିଥିଲେ, ଜୁଲିୟାନ୍ ହକସ୍‌ଲେ ଲୋକପ୍ରିୟ ବିଜ୍ଞାନ ଲେଖାପାଇଁ ସେହି ପୁରସ୍କାର ୧୯୫୩ ମସିହାରେ ପାଇଥିଲେ । ସେ ଇଂଲଣ୍ଡର ଅତି ମତିବାନ୍ ସମ୍ମାନାସ୍ପଦ ବୈଜ୍ଞାନିକ ଭାବରେ ଖ୍ୟାତ ।

ଥରେ ତାଙ୍କ ସ୍ତ୍ରୀଙ୍କ ସହିତ ତାଙ୍କର ମତାନ୍ତର ହେଲା । ଏହି ମତାନ୍ତର ଥରେ ନୁହେଁ, ଦୁଇଥର ନୁହେଁ, ବହୁଥର । ହକ୍‌ସଲେ ତାଙ୍କ ସ୍ତ୍ରୀଙ୍କୁ ବହୁତ ଭଲ ପାଆନ୍ତି । କିନ୍ତୁ ଏହି ମତାନ୍ତର ବଢ଼ି ବଢ଼ି ଚାଲିଲା । ଶେଷରେ ଛାଡ଼ପତ୍ର ଦେବା ଅବସ୍ଥାକୁ ଚାଲି ଆସିଲା । ସ୍ୱାମୀ-ସ୍ତ୍ରୀ ଉଭୟେ ରାଜି ହୋଇଗଲେ ଏହି ଛାଡ଼ପତ୍ର ପାଇଁ । କୋର୍ଟରେ ମୋକଦ୍ଦମା ଡାଏର କରିବାକୁ ପଡ଼ିବ । କିଏ ଡାଏର କରିବ ? ହକ୍‌ସଲେ ନିଜେ ଡାଏର କରିବାକୁ ମନା କରିଦେଲେ । ଶେଷରେ ସ୍ତ୍ରୀଙ୍କୁ ଡାଏର କରିବାକୁ ପଡ଼ିବ । କିନ୍ତୁ କ'ଣ କାରଣ ଦେଇ ଏହି ମୋକଦ୍ଦମା ଡାଏର କରିବେ, ସେଇ ହେଲା ଚିନ୍ତା । ସେତେବେଳେ ଇଂଲଣ୍ଡରେ ଛାଡ଼ପତ୍ର ପାଇଁ ଯେଉଁ ନିୟମ ଥିଲା ତାହା ବଡ଼ କଡ଼ା ନିୟମ । ସ୍ୱାମୀ ଯଦି ସ୍ତ୍ରୀକୁ ବାଡ଼ାଏ, ତେବେ ସ୍ତ୍ରୀ

ଗୁଡ଼ପଣ ପାଇଁ ମୋକଦ୍ଦମା କରିପାରିବ । ହକ୍ସଲେଙ୍କ ସ୍ତ୍ରୀ ହକ୍ସଲେଙ୍କୁ କହିଲେ ତାଙ୍କୁ ବାଡ଼େଇବା ପାଇଁ । ପୁଣି ଏମିତି ଭାବରେ ବାଡ଼େଇବାକୁ ହେବ ଯେମିତିକି ଡାକ୍ତର ମାଇନା ହେଲେ ଡାକ୍ତର ବାଡ଼େଇବା ଲକ୍ଷଣ ଦେଖି ରିପୋର୍ଟ ଦେବେ । ହକ୍ସଲେ ତାଙ୍କ ସ୍ତ୍ରୀଙ୍କୁ ଏତେ ଭଲ ପାଉଥିଲେ ଯେ, ଏମିତି ବାଡ଼େଇବା ପାଇଁ ମନା କରିଦେଲେ । ବର୍ତ୍ତମାନ ସେମାନଙ୍କ ଭିତରେ ଚିନ୍ତା ପଡ଼ିଲା ଆଉ କ'ଣ କରାଯିବ ? ଗୁଡ଼ପଣ ମୋକଦ୍ଦମା ଡାଏରର ଆଉ ଏକ ବ୍ୟବସ୍ଥା ହେଉଛି ସ୍ୱାମୀର ଚରିତ୍ର ଉପରେ ସ୍ତ୍ରୀର ଯଦି ସନ୍ଦେହ ଆସେ । ହକ୍ସଲେ ଖୁବ୍ ମାନ୍ତବାନ ଓ ଉଚ୍ଚକୋଟୀର ନୈତିକ ଚରିତ୍ର ପାଇଁ ସାରା ଇଂଲଣ୍ଡରେ ଖୁବ୍ ଖ୍ୟାତିଲାଭ କରିଥାନ୍ତି । ତେଣୁ ସେଭଳି କାରଣ ଦେଖାଇ ମୋକଦ୍ଦମା ଡାଏର କଲେ ସଙ୍ଗେ ସଙ୍ଗେ ଖାରଜ ହୋଇଯିବ । କାରଣ ହାକିମ ମୋଟେ ବିଶ୍ୱାସ କରିବେନି । ସ୍ୱାମୀ-ସ୍ତ୍ରୀ ଉଭୟେ ବସି ଭାବିଲେ ଆଉ କେଉଁ ଉପାୟ କଲେ ଏହି ମୋକଦ୍ଦମା ଡାଏର କରିହେବ । ପରିଶେଷରେ ଆଉ କିଛି ଉପାୟ ମିଳିଲା ନାହିଁ । ଶେଷରେ ନିଜର ସଚ୍ଚରିତ୍ରକୁ ବଦନାମ କରିବାକୁ ହକ୍ସଲେ ଠିକ୍ କଲେ । ତା' ନ ହେଲେ ତାଙ୍କ ସ୍ତ୍ରୀ ଗୁଡ଼ପଣ ପାଇପାରୁ ନାହାନ୍ତି । ଗୋଟିଏ ଦିନ ଠିକ୍ ହେଲା, ସେଦିନ ହକ୍ସଲେ ଲଣ୍ଡନର ଗୋଟିଏ ହୋଟେଲରେ ଇଂଲଣ୍ଡର ଏକ ଜଣାଶୁଣା ବେଶ୍ୟାକୁ ନେଇ ରହିବେ । ତାଙ୍କ ସ୍ତ୍ରୀ ସେଦିନ ରାତିରେ ସେହି ହୋଟେଲକୁ ଯାଇ ଉଭୟଙ୍କୁ ଗୋଟିଏ ଘରେ ରହିଥିବାର ଦେଖିବେ । ଏହା ହେଲେ ସେ ତାଙ୍କର ସ୍ୱାମୀଙ୍କୁ ବ୍ୟଭିଚାରରେ ଅଭିଯୁକ୍ତ କରି ମୋକଦ୍ଦମା ଡାଏର କରିପାରିବେ । ଠିକ୍ ସେହି ଯୋଜନା ଅନୁସାରେ କାର୍ଯ୍ୟ ଆରମ୍ଭ ହେଲା । ହକ୍ସଲେ

ଇଂଲଣ୍ଡରେ ମାଣ୍ଡବାନ ଖବରରେ ଏତେ ସମ୍ମାନିତ ଯେ ତାଙ୍କୁ ଏହି କାମରେ ସହଯୋଗ କରିବା ପାଇଁ ଇଂଲଣ୍ଡର କୌଣସି ବେଶ୍ୟା ରାଜି ହେଲେନି । ବହୁ କଷ୍ଟରେ ତାଙ୍କର ଜଣେବନ୍ଧୁ ସନ୍ଦେହଜନକ ଚରିତ୍ର ଥିବା ଜଣେ ସ୍ତ୍ରୀଲୋକକୁ ବହୁ ଅର୍ଥ ଲାଞ୍ଚ ଦେଇ ମଗାଇ ହୋଟେଲକୁ ଆଣି ଏହି କାର୍ଯ୍ୟ ସମ୍ପାଦନ କଲେ । ସମସ୍ତ ସାକ୍ଷୀ ପ୍ରମାଣ ପାଇ ମାଜିଷ୍ଟ୍ରେଟ ହକ୍‌ସଲେଙ୍କୁ ବ୍ୟଭିଚାର ଦୋଷରେ ଅଭିଯୁକ୍ତ କରି ତାଙ୍କ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେବା ପାଇଁ ଅନୁମତି ଦେଲେ ସିନା, କିନ୍ତୁ ହକ୍‌ସଲେ ଏହି ବ୍ୟଭିଚାରଠାରୁ ଢେର ଉଚ୍ଚର ବୋଲି ସେ ମନେ ମନେ ମତପୋଷଣ କରୁଥିଲେ । କାରଣ ତାଙ୍କର ବିଶ୍ୱାସ ଥିଲା, ଛାଡ଼ପତ୍ର ପାଇଁ ଏହା ଏକ ପ୍ରହସନ ମାତ୍ର ।

## ଗୁରୁ

ଇଂଲଣ୍ଡର ବିଶିଷ୍ଟ ବୈଜ୍ଞାନିକ ଜେ·ବି·ଏସ୍· ହାଲଡ଼େନ୍ ଏକ ବିଚିତ୍ର ବୈଜ୍ଞାନିକ ଥିଲେ । ସେ ପଇସା କାରବାରରେ ଅଧଲାଟିଏ କାହାକୁ ଛାଡ଼ୁନଥିଲେ, ଦରକାର ପଡ଼ିଲେ ହଜାର ହଜାର ଟଙ୍କା ଦେଇଦେବେ । ହାଲଡ଼େନ୍ ତାଙ୍କ ଜୀବନର ଶେଷକାଳରେ ଓଡ଼ିଶାର ଭୁବନେଶ୍ୱରରେ ଗବେଷଣାରେ କଟାଇ ଏହି ରାଜ୍ୟରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ଏଠି ସେ ପଇସା ଦେଣନେଣ ବେଳେ ଅଧଲାଟିଏ ଛାଡ଼ୁ ନ ଥିଲେ, କିନ୍ତୁ ଦାନ କଲାବେଳେ ମୁକ୍ତହସ୍ତ । ଥରେ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଗୋଟିଏ ବକ୍ତୃତା ଦେଇଥିଲେ, ଏହି ବକ୍ତୃତାଟି ପାଇଁ ତାଙ୍କର ଦୁଇହଜାର ଟଙ୍କା ପାଇବା କଥା । ସେ ବିଶ୍ୱବିଦ୍ୟାଳୟକୁ ଲେଖିଦେଲେ ଯେ ଏହି ଟଙ୍କାରୁ ଅଧେ ତାଙ୍କର ଏକ ଜଣାଶୁଣା ଗରିବ ଶ୍ରମିକକୁ ଦାନକରି ଦିଆଯିବ ଓ ବାକିତକ ତାଙ୍କ ସେକ୍ରେଟାରୀଙ୍କୁ ଦିଆଯିବ ।

ତାଙ୍କୁ ତାଙ୍କର ଏହି ବଚନ ମନ୍ତଗନ୍ତ କଥା ପଗ୍ଭରିଲାରୁ ସେ ହସି ହସି କହିଲେ, "ଆୟୁକର ଦାଉରୁ ରକ୍ଷା ପାଇବା ପାଇଁ ଏହା ଏକ ଉପାୟ ।"

## ପାଞ୍ଚ

ପୃଥିବୀ-ପ୍ରସିଦ୍ଧ ବାଷ୍ପୀୟ ଇଞ୍ଜିନ୍‌ର ଉଦ୍ଭାବକ ଜେମ୍‌ସ ଓ୍ୱାଟ ଯେତେବେଳେ ବାଷ୍ପୀୟ ଇଞ୍ଜିନ୍‌ର ଉଦ୍ଭାବନ କଲେ, ସେତେବେଳେ ସେ ଏତେ ପ୍ରସିଦ୍ଧି ଅର୍ଜନ କରି ନଥିଲେ । ତାଙ୍କର ପ୍ରଥମ ସ୍ତ୍ରୀ ମରିଗଲାରୁ ସେ ଯେତେବେଳେ ଦ୍ୱିତୀୟ ସ୍ତ୍ରୀ ଗ୍ରହଣ କରିବାକୁ ଇଚ୍ଛା କରନ୍ତି, ସେତେବେଳେ ତାଙ୍କୁ କେହି ଝିଅ ଦେଲେନି । ଏହି ସମୟରେ ଜଣେ ଲୋକଙ୍କ ଝିଅ ସହିତ ଓ୍ୱାଟଙ୍କ ବିବାହ ପ୍ରସ୍ତାବ ପଡ଼ିଥିଲା । ଝିଅର ବାପା ଓ୍ୱାଟଙ୍କ ଆର୍ଥିକ ସ୍ୱଚ୍ଛଳତା ନ ଦେଖିଲେ ଝିଅ ଦେବେ ନାହିଁ ବୋଲି ମନା କରିଦେଲେ । ଓ୍ୱାଟଙ୍କ ବନ୍ଧୁମାନେ ତାଙ୍କୁ ଏକ ବଡ଼ ବୈଜ୍ଞାନିକ ଓ ତାଙ୍କ ଉଦ୍ଭାବନ କାର୍ଯ୍ୟକାରୀ ହେଲେ ସେ ଏକ କୋଟିପତି ହୋଇପାରନ୍ତି ବୋଲି ଯେତେ କହିଲେ ହେଁ ସେ ଶୁଣିଲେ ନାହିଁ । ଏହି ସମୟରେ ଓ୍ୱାଟଙ୍କ ବାଷ୍ପୀୟ ଇଞ୍ଜିନ୍‌କୁ କାର୍ଯ୍ୟରେ ଲଗାଇ ଜଳଜାହାଜ ତିଆରି କରିବାକୁ ବୈଜ୍ଞାନିକ ଫୁଲ୍‌ଟନ୍‌ଙ୍କ ସହିତ ଓ୍ୱାଟ୍‌ଙ୍କର ଚୁକ୍ତି ହୋଇଯାଇଥାଏ । ଏହା କାର୍ଯ୍ୟକାରୀ ହେଲେ ଚୁକ୍ତି ଅନୁଯାୟୀ ଓ୍ୱାଟ୍ ବହୁତ ଅର୍ଥ ପାଇବେ । ଏକଥା କନ୍ୟାର ପିତାଙ୍କୁ ଓ୍ୱାଟ୍‌ଙ୍କ ବନ୍ଧୁମାନେ କହନ୍ତେ ସେ ଚୁକ୍ତିପତ୍ର ଦେଖିବାକୁ ଗ୍ଭହିଁଲେ । ଫୁଲ୍‌ଟନ୍‌ଙ୍କର ଏହି ଚୁକ୍ତିପତ୍ର ସାଧା କାଗଜରେ ହୋଇଥିଲା, କାରଣ କେହି କାହାରିକୁ ଅବିଶ୍ୱାସ କରୁ ନଥିଲେ । ଏହି

ରୂ କୁପନକୁ ଦେଖି କନ୍ୟାପିତା ଝିଅ ଦେବାକୁ ରାଜି ହେଲେନି । ତାଙ୍କର ଧାରଣା ରେଜିଷ୍ଟ୍ରି ନହେଲେ ଏହାର କି ମୂଲ୍ୟ ଅଛି ? ବଡ଼ ଅଡୁଆ କଥା ହେଲା, ଓ୍ୱାଟ୍ ବାହାହୋଇ ପାରୁନାହାନ୍ତି । କ'ଣ କରାଯିବ ? ଓ୍ୱାଟ୍‌ଙ୍କ ବନ୍ଧୁମାନେ ବଡ଼ ଅଡୁଆରେ ପଡ଼ିଲେ । ସେମାନେ ଦୌଡ଼ିଲେ ଫୁଲଟନ୍‌ଙ୍କଠାକୁ । ସେତେବେଳକୁ ଫୁଲଟନ୍‌ଙ୍କର ଓକିଲ ସେହି ସହରରେ ନଥାନ୍ତି । ଫୁଲଟନ ତରବର ହୋଇ ଆଉ ଏକ ଓକିଲ ଡାକି ଏହାକୁ ରେଜିଷ୍ଟ୍ରି କରାଇ କନ୍ୟାପିତାଙ୍କଠାକୁ ଓଠାଇଲାରୁ ଓ୍ୱାଟ ବାହାହୋଇ ପାରିଲେ ।

## ଛଅ

ଜଳଜାହାଜର ପ୍ରଥମ ନିର୍ମାତା ରବର୍ଟ ଫୁଲଟନ୍ ପ୍ରଥମେ ଗୋଟିଏ ବାଷ୍ପୀୟ ବୋଟ୍ ତିଆରି କରି ଆମେରିକାର ନ୍ୟୁୟର୍କ ସହରରୁ ହଡ଼ସନ ନଦୀ ଦେଇ ସହରରାଜ୍ୟର ଉପର ମୁଣ୍ଡରେ ଥିବା ଅଲବାନି ସହର ପର୍ଯ୍ୟନ୍ତ ଚଳାଇଥିଲେ । ଏହା ହେଉଛି ଆମେରିକାର ସର୍ବପ୍ରଥମ ବାଷ୍ପୀୟ ଇଞ୍ଜିନ୍‌ଚାଳିତ ବୋଟ ଓ ହଡ଼ସନ୍ ନଦୀରେ ଏହା ହେଲା ସର୍ବପ୍ରଥମ ଇଞ୍ଜିନ୍‌ଚାଳିତ ନୌକା ଯାତ୍ରା । ସେ ଆଲ୍‌ବାନିରେ ପହଞ୍ଚି ସେଠାରୁ ଯେତେବେଳେ ନ୍ୟୁୟର୍କକୁ ଫେରି ଆସନ୍ତି, ଜଣେଲୋକ ତାଙ୍କଠାକୁ ଦୌଡ଼ି ଦୌଡ଼ି ଆସି ପହଞ୍ଚିଗଲା । ଲୋକଟି ତାଙ୍କ ବୋଟରେ ନ୍ୟୁୟର୍କ ଯିବାକୁ ଚାହୁଁଥିଲା । ଫୁଲଟନ ଏହା ଦେଖି ଭାରି ଖୁସି ହୋଇଗଲେ ଓ ଲୋକଟିକୁ କହିଲେ, "ତୁମେ ଯଦି ନ୍ୟୁୟର୍କ ଯିବାକୁ ଚାହୁଁଛ, ଆମେ ତୁମକୁ ବୋଟରେ ନେଇଯିବୁ । କିନ୍ତୁ ସେଥିପାଇଁ ତୁମକୁ ଛଅ ଡଲାର ଭଡ଼ା ଦେବାକୁ ପଡ଼ିବ । ଲୋକଟି ସଙ୍ଗେ ସଙ୍ଗେ

ରାଜି ହୋଇଯାଇ ଛଅ ଡଲାର ଦେଇଦେଲା । ଫୁଲଟନ ଖୁସି ହୋଇ ସେହି ଲୋକଟିକୁ ନିଉୟର୍କ ନେଇ ଆସିଲେ ।

କିଛି ବର୍ଷ ପରେ ଫୁଲଟନ ବଡ଼ ଜଳଜାହାଜ ତିଆରି କରି ଯେତେବେଳେ ନିଉୟର୍କ ଓ ଅଲବାନୀ ଭିତରେ ନିୟମିତ ଜାହାଜ ଚଳାଚଳକୁ ବ୍ୟବସାୟିକ ଭିତ୍ତିରେ ଆରମ୍ଭ କଲେ, ସେ ସେହି ଲୋକଙ୍କୁ ଏହାକୁ ଉଦ୍‌ଘାଟନ କରିବାକୁ ନିମନ୍ତ୍ରଣ କଲେ । ସେ ତାଙ୍କୁ ଜାହାଜ ଭିତରେ ବୁଲାଇ ଦେଖାଉଁ ଦେଖାଉଁ କହିଲେ, "ଆପଣଙ୍କର ମନେଥିବ ମହାଶୟ, ଅଲବାନୀରୁ ଆମର ପ୍ରଥମ ବୋଟ୍ ନିଉୟର୍କ ଆସିଲାବେଳେ ଆପଣ ଥିଲେ ଆମ ବୋଟରେ ସର୍ବପ୍ରଥମ ଯାତ୍ରୀ । ଆପଣ ସେହି ଯାତ୍ରା ପାଇଁ ଯେଉଁ ଛଅ ଡଲାର ଭଡ଼ା ଦେଇଥିଲେ, ତାହା ହେଲା ମୋର ସର୍ବପ୍ରଥମ ଆୟ । ମୁଁ ଆପଣଙ୍କ ପ୍ରଦତ୍ତ ସେହି ଛଅ ଡଲାରକୁ ଯତ୍ନ ସହକାରେ ସାଇତି ରଖିଛି । ଖୁବ୍ ଅର୍ଥାଭାବ ଭିତରେ ଗତି କରି ମଧ୍ୟ ମୁଁ ଏହାକୁ ହାତଛଡ଼ା ହେବାକୁ ଦେଇନାହିଁ । ସେହି ଡଲାରକୁ ଦେଖାଇ ଦେଉଁ ଦେଉଁ କହିଲେ, "ଏହି ହେଉଛି ଆପଣଙ୍କ ପ୍ରଦତ୍ତ ସେହି ଡଲାର, ଆଜି ଯେ ଆପଣ ଏହି ବ୍ୟବସାୟିକ ଅଭିଯାନର ଉଦ୍‌ଘାଟକ, ଏହା ଆମ ପକ୍ଷରେ କମ ବଡ଼ ସୌଭାଗ୍ୟର କଥା ନୁହେଁ ।"

## ସାତ

ଇଂରେଜ ବୈଜ୍ଞାନିକ ଏଡ଼ଓ୍ୱାଡ଼ ଜେନର ବସନ୍ତ ଟିକା ଆବିଷ୍କାର କରି ସାରା ପୃଥିବୀରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଏହାଦ୍ୱାରା ପୃଥିବୀର କୋଟି କୋଟି ଲୋକ ଉପକୃତ ହୋଇଥିବାରୁ ବହୁ ଦେଶରୁ ତାଙ୍କ ପାଇଁ ଅସଂଖ୍ୟ ସମ୍ମାନ ଭାସି ଆସିଥିଲା ।

ସେତେବେଳେ ଫ୍ରାନ୍‌ସରେ ନେପୋଲିୟନଙ୍କ ରାଜୁତି ଚାଲିଥାଏ । ଇଂଲଣ୍ଡ ଓ ଫ୍ରାନ୍‌ସ ମଧ୍ୟରେ ଅନନୁକୂଳ ସମ୍ବନ୍ଧ । ଫରାସୀ ଲୋକମାନେ ଇଂରେଜ ଲୋକମାନଙ୍କୁ ଭାରି ଘୃଣା କରୁଥିଲେ । ଏହି ସମୟରେ ଜେନର ପାରିସ୍‌ରେ ଥିବା ତାଙ୍କ ଭାଇ ନିମିତ୍ତ କଣ ଏକ ସୁବିଧା ପାଇଁ ନେପୋଲିୟନଙ୍କ ଠାକୁ ଏକ ଦରଖାସ୍ତ ପଠାଇଥିଲେ । ଦରଖାସ୍ତଟି ଯେତେବେଳେ ନେପୋଲିୟନଙ୍କ ପାଖକୁ ଆସିଲା, ଇଂରେଜ ଲୋକଙ୍କ ନାଁ ଦେଖି ସେ ଏହାକୁ ନାମଞ୍ଜୁର କରିବାକୁ ଯାଉଥିଲେ, ଏହି ସମୟରେ ନେପୋ-ଲିୟନଙ୍କ ପ୍ରେୟସୀ ଯୋସେଫିନ ତାଙ୍କଠାରେ ଠିଆ ହୋଇଥିଲେ । ସେ ଜେନରଙ୍କ ନାଁ ଦେଖି କହିପକାଇଲେ, "ଏ ବୋଧହୁଏ ବସନ୍ତ ଟିକାର ଉଦ୍ଭାବକ ।" ବସନ୍ତଟିକା ଉଦ୍ଭାବକଙ୍କ ନାଁ ଶୁଣି ନେପୋଲିୟନ ଚମକିପଡ଼ିଲେ, "ଆଁ, ଏ ହେଉଛନ୍ତି ସେହି ଜେନର ? ତା'ହେଲେ ୟାଙ୍କ ଦରଖାସ୍ତକୁ ଉପେକ୍ଷା କରାଯାଇ-ପାରିବ ନାହିଁ । ସେ ଯାହା ଚାହିଁଛନ୍ତି, ତାଙ୍କୁ ସଙ୍ଗେ ସଙ୍ଗେ ଦିଆଯାଉ" ବୋଲି ସେ ଦରଖାସ୍ତ ଉପରେ ଅର୍ଡ଼ର କରିଦେଲେ ।

## ଆଠ

୧୯୪୯ ମସିହାରେ ହିଟଲର ଯେତେବେଳେ ଡେନ୍‌ମାର୍କ ରାଜ୍ୟ ଆକ୍ରମଣ କଲେ, ବୈଜ୍ଞାନିକ ନିଲସ୍ ବୋହର ସେତେବେଳେ ସେଠାରେ ଅଧ୍ୟାପକ ଥିଲେ । ହିଟଲରଙ୍କର ଇଚ୍ଛା ଥିଲା ସେ ନିଲସ ବୋହରଙ୍କୁ ବନ୍ଦୀ କରିଥାନ୍ତେ । ବୋହର ହିଟଲରଙ୍କର ମନୋଗତ ଜାଣିପାରି ଆକ୍ରମଣ ସଙ୍ଗେ ସଙ୍ଗେ ହଠାତ୍ ଡେନମାର୍କରୁ ଅନ୍ତର୍ହିତ ହୋଇଗଲେ । ଡେନମାର୍କରେ ସେ ରହିଲେ ସତ, କିନ୍ତୁ କେଉଁଠି ଅଛନ୍ତି ଜାଣିବା କଷ୍ଟକର । ଜାଣ ଏକପ୍ରକାର ଅଜ୍ଞାତବାସ ।

ହିଟଲରଙ୍କ ନାଜି ନେତାମାନେ ବହୁ ଚେଷ୍ଟା କରି ମଧ୍ୟ ତାଙ୍କୁ ଠାବ କରିପାରି ନଥିଲେ । ସେ ସେହିଭଳି ଭାବରେ ତିନିବର୍ଷ କାଳ ରହିଲେ । ସେଥିଭିତରେ ତାଙ୍କ ଗବେଷଣା ଚାଲିଥାଏ ଓ ନାଜି ବିରୋଧରେ ଲୋକଙ୍କୁ ମତାଇବା ଚେଷ୍ଟା ମଧ୍ୟ ଚାଲିଥାଏ । ୧୯୪୨ରେ ଆମେରିକାରେ ତାଙ୍କ ଆବଶ୍ୟକତା ପରମାଣୁ ବୋମା ସମ୍ବନ୍ଧରେ ଦରକାର ପଡ଼ିଲା । ତେଣୁ ନିଲସ୍ ବୋହର ଅତି ଗୋପନୀୟ ଭାବରେ ଡେନ୍‌ମାର୍କରୁ ସୁଇଡ଼େନକୁ ପଳାଇଲେ । ସେଠାରୁ ତାଙ୍କର ଆମେରିକା ଯିବାର କଥା । ଡେନ୍‌ମାର୍କରୁ ପଳାତକ ଭାବରେ ଆସୁଥିବା ଇହୁଦୀମାନଙ୍କୁ ସୁଇଡ଼େନ ଅଧିପତି ଦେଶରେ ଆଶ୍ରାଦେବା କଥା, କିନ୍ତୁ ସେ ଆଶ୍ରା ଦେବାକୁ ମନା କରିଦେଲେ । ଏହା ଶୁଣି ନିଲସ୍ ବୋହର ଆମେରିକା ନଯାଇ ହରତାଳ କଲେ । ସୁଇଡ଼େନ ରଜା ଆଶ୍ରାପାଇଁ ପ୍ରତିଶ୍ରୁତି ନଦେଲା ପର୍ଯ୍ୟନ୍ତ ସେ ସୁଇଡ଼େନ ଛାଡ଼ିବେ ନାହିଁ ବୋଲି ଜଣାଇଦେଲେ । ଶେଷରେ ସୁଇଡ଼େନର ରାଜା ତାଙ୍କୁ ପ୍ରତିଶ୍ରୁତି ଦେଲାରୁ ସେ ସୁଇଡ଼େନରୁ ଇଂଲଣ୍ଡ ଦେଇ ଆମେରିକା ଗଲେ । ସେଠାରେ ଆଇନଷ୍ଟାଇନ୍ ଫେର୍‌ମି ଆଦିଙ୍କ ଦଳରେ ଯୋଗଦେଇ ପରମାଣୁ ବୋମା କାରଖାନାରେ କାର୍ଯ୍ୟ କଲେ । ବୋହର ଡେନ୍‌ମାର୍କରୁ ପଳାଇଯିବା ପରେ ନାଜି ନେତାମାନେ ବୋହରଙ୍କର ଗବେଷଣାଗାରକୁ ଦଖଲ କରିନେଲେ । ଜର୍ମାନ ବୈଜ୍ଞାନିକ-ମାନଙ୍କୁ ଏହି ଗବେଷଣାଗାରକୁ ଚଳାଇବା ପାଇଁ ଯେତେ ପ୍ରବର୍ତ୍ତାଇଲେ ମଧ୍ୟ ଏଥିରେ କେହି ରାଜି ହୋଇ ନଥିଲେ ।

**ନଅ**

ଆମେରିକାର ସୁବିଖ୍ୟାତ ପଦାର୍ଥବିଜ୍ଞାନବିତ୍ ରବର୍ଟ ଏଣ୍ଡ୍ରୁ ମିଲିକାନ ଛାତ୍ରାବସ୍ଥାରେ ପଦାର୍ଥ ବିଜ୍ଞାନ ପଢ଼ି ନଥିଲେ ।

ସେ ସ୍କୁଲ ଓ କଲେଜ ସ୍ତରରେ ସାହିତ୍ୟ, ବିଶେଷତଃ ଗ୍ରୀକ୍ ସାହିତ୍ୟ ପଢ଼ିଥିଲେ । ସେ କଲେଜ ଗ୍ରାଡ଼ ହେଲାବେଳେ ଚାକିରି ଖୋଜିବାକୁ ବାହାରିଲେ, ସେ ଯାଇ ପହଞ୍ଚିଲେ ସେହି କଲେଜକୁ ଛାତ୍ର ଯୋଗାଉଥିବା ଏକ ସ୍କୁଲରେ । ସେଠାରେ ଏକ ଶିକ୍ଷକ ଚାକିରି ଖାଲି ପଡ଼ିଥିଲା । ସେହି ଶିକ୍ଷକଙ୍କୁ ଛାତ୍ରମାନଙ୍କୁ ପଦାର୍ଥ ବିଜ୍ଞାନ ପଢ଼ାଇବାକୁ ହେବ । ଇଣ୍ଟରଭ୍ୟୁ ବେଳେ ସେ ଯେତେ-ବେଳେ ଏହି କଥା ଜାଣିଲେ, ଚାକିରି ନହେବା ଆଶା ତାଙ୍କୁ ଜଳ ଜଳ ଦିଶିଲା । ପ୍ରାର୍ଥୀମାନଙ୍କୁ ଯିଏ ଇଣ୍ଟରଭ୍ୟୁ କରୁଥିଲେ, ସେ ହେଉଛନ୍ତି ତାଙ୍କର ଗ୍ରୀକ୍ ଅଧ୍ୟାପକ । ଇଣ୍ଟରଭ୍ୟୁରେ ଅଧ୍ୟାପକ ସେହି ଶିକ୍ଷକ ଚାକିରି ପାଇଁ ମିଲିକାନ୍‌କୁ ବାଛିଲେ । ମିଲିକାନ୍ ଆଶ୍ଚର୍ଯ୍ୟ ହୋଇ ଅଧ୍ୟାପକଙ୍କୁ ପଚାରିଲେ, "ଏ କି କଥା, ସେତ ନିଜେ ପଦାର୍ଥବିଜ୍ଞାନ ପଢ଼ିନାହାନ୍ତି, ପିଲାମାନଙ୍କୁ ପଢ଼ାଇବେ କେମିତି ? ଅଧ୍ୟାପକ ଉତ୍ତରରେ କହିଲେ, "ତୁମେ ତ ଗ୍ରୀକ୍‌ରେ ଖୁବ ଭଲ କରୁଥିଲ, ମୁଁ ଆଶା କରୁଛି ତୁମେ ପଦାର୍ଥ ବିଜ୍ଞାନ ପଢ଼ିଲେ ଭଲ ପଢ଼ାଇ ପାରିବ । ସେହି ଉକ୍ତିରେ ମିଲିକାନଙ୍କ ଜୀବନରେ ପରିବର୍ତ୍ତନ ଆସିଲା । ସେ ପଦାର୍ଥବିଜ୍ଞାନ ପଢ଼ି ପଢ଼ାଇବାକୁ ଆରମ୍ଭ କଲେ । ସେହି ଦିନଠାରୁ ଉତ୍ତରୋତ୍ତର ଉନ୍ନତି କରି ପୃଥିବୀର ଜଣେ ଶ୍ରେଷ୍ଠ ପଦାର୍ଥବିଜ୍ଞାନବିତ୍ ଭାବରେ ପ୍ରସିଦ୍ଧି ଅର୍ଜନ କରି ଶେଷରେ ନୋବେଲ ପୁରସ୍କାର ପାଇଥିଲେ ।

## ଦଶ

ନିଉଟନ ଛାତ୍ରାବସ୍ଥାରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ପଢ଼ୁଥିଲେ । ସେ ଯାହା ଘରେ ରହି ପଢ଼ୁଥିଲେ, ସେହି ଘରର

ମାଲିକାଣୀ ହଠାତ୍ ତାଙ୍କୁ ପଚାରିଲେ,"ହଇଏ ବାବୁ,ହିସାବ କରି କହିଲ ମୁଁ ମାଛ ଗୋଟାକୁ ତିନି ପେନ୍‌ସ ହିସାବରେ ସାତଟି ମାଛ କିଣିଲି । ମାଛବାଲାକୁ ମୋତେ କେତେ ଅର୍ଥ ଦେବାକୁ ପଡ଼ିବ ?" ନିଉଟନ୍ ସଙ୍ଗେ ସଙ୍ଗେ ଲଗାରିଥିମ୍ ଟେବୁଲ ସାହାଯ୍ୟରେ କଷି ବତାଇଦେଲେ ଯେ ଏହା ୨୦ରୁ ୨୨ ପେନ୍‌ସ ଭିତରେ ହେବ । ମାଲିକାଣୀ ଯେତେବେଳେ କହିଲେ ମାଛ ବିକାଳି ତାଙ୍କଠାରୁ ୨୧ ପେନ୍‌ସ ନେଲା, ସେ ଆନନ୍ଦରେ ନାଚଉଠି କହିଲେ, "ସେହି ମାଛବିକାଳିଟି ନିଶ୍ଚୟ ଜଣେ ବଡ଼ ଗଣିତଜ୍ଞ, ନଚେତ୍ ସଙ୍ଗେ ସଙ୍ଗେ ଏଭଳି ନିର୍ଭୁଲ ଉତ୍ତର ଦେଇଥାନ୍ତେ କେମିତି ?"



# ତୃତୀୟ ଅଧ୍ୟାୟ

## ଏକ

ପୃଥିବୀ-ବିଖ୍ୟାତ ପଦାର୍ଥ ବିଦ୍ୟାବିତ୍ ଆରନେଷ୍ଟ ରଥରଫୋର୍ଡ଼ ନିଉଜିଲାଣ୍ଡ ଦେଶର ଲୋକ । ସେ ନିଉଜିଲାଣ୍ଡରୁ ପାସ୍ କରି କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଗବେଷଣା କରିବା ପାଇଁ ଦରଖାସ୍ତ କଲେ । ଜାଗା ଖାଲି ନଥିବାରୁ ସେଥିର ଜଣେ ଗ୍ରହଣ ନଆଯିବା କଥା । ସେତେବେଳେ ମାତ୍ର କେମ୍ବ୍ରିଜରେ ଅଧ୍ୟାପକ ଥାଆନ୍ତି ସାର୍ ଜେ. ଜେ· ଟମ୍ପସନ । ରଥରଫୋର୍ଡ଼ଙ୍କ ଆଶା ଥାଏ ଯେହେତୁ ସେ ବିଦ୍ୟୁତ୍-ଚୁମ୍ବକରେ ଖୁବ୍ ଆଖି ଦୁରୁଶିଆ ଗବେଷଣା କରିଛନ୍ତି, ସାର୍ ଜେ·ଜେ· ଯଦି ଇଣ୍ଟରଭ୍ୟୁ କରନ୍ତି, ତେବେ ସେ ନିଶ୍ଚୟ ବଛାଯିବେ । କିନ୍ତୁ ଫଳ ବାହାରିଲାରୁ ଦେଖାଗଲା, ରଥରଫୋର୍ଡ଼ ବଛାହୋଇ ନାହାନ୍ତି ।

ତାଙ୍କ ସ୍ଥାନରେ ମେକଲଉରନ୍ ନାମକ ଜଣେ ରସାୟନବିତ୍ ବଛାଯାଇଛନ୍ତି । ବଡ଼ ଦୁଃଖରେ ରଥରଫୋର୍ଡ଼ ନିଜ ଦେଶକୁ ଫେରିଗଲେ ଓ ନିଜ ପ୍ରେୟସୀଙ୍କଠାକୁ ଚିଠି ଲେଖିଲେ ଯେ ପ୍ରତିଯୋଗିତାରେ ସେ ହାରିଗଲେ । ଏହି ପରୀକ୍ଷାରେ ସୁନାର ବିଜୟ ହେଲା । ମେକଲଉରନ୍ ବଛା ହେବାର ଏକମାତ୍ର କାରଣ ଥିଲା—ସେ ସୁନା ଉପରେ ଖଣ୍ଡିଏ ବହି ଲେଖିଥିଲେ । ସେହି

ଦକ୍ଷତି ଯୋଗୁଁ ସେ ବସ୍ତୁହେଲେ । କିନ୍ତୁ କିଛିଦିନ ପରେ ମେକଲ୍-ଉଇନ୍ ଏକ ଭଲ ଚାକିରି ପାଇଯିବାରୁ ରଥରଫୋର୍ଡ଼ ତାଙ୍କ ସ୍ଥାନରେ ବସ୍ତୁ ହୋଇ ଆସିଲେ ଓ କେମ୍ବ୍ରିଜରେ ଗବେଷଣା କରି ପୃଥିବୀ ପ୍ରସିଦ୍ଧ ନାମ ଅର୍ଜନ କରି ନୋବେଲ ପୁରସ୍କାର ପାଇଲେ ।

## ଦୁଇ

ବସନ୍ତ ଟିକାର ଆବିଷ୍କାରକ ଏଡ଼ୱାର୍ଡ଼ ଜେନର ପିଲାଦିନେ ସ୍କୁଲରେ ପଢ଼ୁଥିଲାବେଳେ ଥରେ ଦଳେ ଲୋକଙ୍କ ଭିତରେ ଝଗଡ଼ା ଲାଗିଲା । କଥା ହେଲା ମହମବତି, ଶିଖାର କେଉଁ ଅଂଶ ସବୁଠାରୁ ଅଧିକ ଗରମ । ଦଳେ କହିଲେ ଏହାର ତଳ ଅଂଶ ଅଧିକ ଗରମ ଓ ଆଉଦଳେ କହିଲେ—ନା, ଏହାର ଉପର ଅଂଶ ଅଧିକ ଗରମ । ଏହି କଥାଟା କେମିତି ସମାଧାନ ହେବ ? ଜେନର କହିଲେ, ଅସୁବିଧା କେଉଁଠି ? ହେଇ ଦେଖ ମୁଁ କରିଦେଉଛି । ଏହା କହି ସେ ନିଜ ଅଙ୍ଗୁଳିକୁ ମହମବତି ଶିଖାର ତଳ ଅଂଶରେ ପୂରାଇଦେଲେ । ସେ ସେଠାରେ ଅଙ୍ଗୁଳି କିଛି ସମୟ ପାଇଁ ରଖିପାରିଲେ । ତାପରେ ଦେଖିଲେ ଉପର ଅଂଶକୁ ଅଙ୍ଗୁଳି ଛୁଆଁଇବାମାତ୍ରେ ଖୁବ୍ କଷ୍ଟ ହେଲା । ତେଣୁ ଉପର ଅଂଶ ଅଧିକ ଗରମ । ସେ ନିଜ ଅଙ୍ଗୁଳି ପୋଡ଼ିଯିବାର ଭୟ ପ୍ରତି ଭ୍ରୂକ୍ଷେପ ନକରି ପରୀକ୍ଷା ଦ୍ୱାରା କଳହର ସମାଧାନ କରିଦେଲେ ।

## ତିନି

ଅଷ୍ଟାଦଶ ଶତାବ୍ଦୀରେ ଫରାସୀ ରସାୟନବିତ୍ ରୁଏଲେ କ୍ଲାସରେ ପଢ଼ାଉଥିବା ବେଳେ ନାନା ପ୍ରକାର ଅଭିଜ୍ଞତା ପ୍ରତି ଗ୍ରହ-

ଛାତ୍ରୀମାନଙ୍କୁ ଦେଖାଉଥିଲେ । ସେ ପଢ଼ାଉ ପଢ଼ାଉ ଯଦି ଗରମ ହେଲା, ତେବେ ସେ ସମସ୍ତଙ୍କ ସାମନାରେ କ୍ଲାସରେ କୋର୍ଟ, ସାର୍ଟ ଆଦି କାଢ଼ି ବିଭିନ୍ନ ଯନ୍ତ୍ର ଉପରେ ଟାଙ୍ଗିଦେଉଥିଲେ । ସେଥିଭିତରୁ କେତେକ ଯନ୍ତ୍ର ପୂରାପୂରି ତାଙ୍କ ପୋଷାକ ଦ୍ୱାରା ଘୋଡ଼ାଇ ହୋଇ ରହୁଥିଲା । ଅଭିଜ୍ଞତା ବେଳେ ଯେତେବେଳେ ସେହି ଯନ୍ତ୍ରର ଆବଶ୍ୟକତା ପଡ଼ୁଥିଲା, ସେ ସେହି ଯନ୍ତ୍ରକୁ ଖୋଜି ଖୋଜି ଷ୍ଟୋର୍‌ରୁମ୍ ପର୍ଯ୍ୟନ୍ତ ଚାଲିଯାଉଥିଲେ । ତାଙ୍କ ଖିଆଲ ନଥିଲା ଯେ ସେ ନିଜେ ଯନ୍ତ୍ରଟିକୁ ନିଜ ପୋଷାକରେ ଘୋଡ଼ାଇ ପକାଇଛନ୍ତି ।

## ଚାରି

କ୍ଲୋରୋଫର୍ମର ଆବିଷ୍କାରକ ଜେମ୍‌ସ ସିମ୍ପସନ ଗୋଟିଏ ଉପଯୁକ୍ତ ଚେତନାପହାରକ ଆବିଷ୍କାର କରିବା ପାଇଁ ଆପ୍ରାଣ ଚେଷ୍ଟା ଚଳାଇଥିଲେ । ଇଥର ଚେତନାପହାରକ ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ ହେଁ ସେ ଏହାକୁ ଶୁଦ୍ଧି ଏଥିରେ ସନ୍ତୁଷ୍ଟ ହୋଇ ନଥିଲେ । ତାଙ୍କର ଇଚ୍ଛା—ସେ ଆହୁରି ଭଲ ଚେତନାପହାରକ ଆବିଷ୍କାର କରିବେ । ସେ ଏଥିପାଇଁ ଜୀବନକୁ ସଙ୍କଟାପନ୍ନ କରି ବହୁ ଔଷଧକୁ ଆଘ୍ରାଣ କଲେ । କିନ୍ତୁ ମନ ମୁତାବକ ପାଇଲେ ନାହିଁ । ୧୮୪୭ ମସିହା ନଭେମ୍ବର ମାସ ୪ ତାରିଖ ଦିନ ସେ ତାଙ୍କ ବନ୍ଧୁମାନଙ୍କୁ ନେଇ ତାଙ୍କ ବୈଠକ-ଖାନାରେ ଖୁସି ଗପ କରୁଥିଲେ । ଏତିକବେଳେ ୧୬ ବର୍ଷ ଆଗେ ଜର୍ମାନୀର ଲିଇବିଗ୍ ନାମକ ରସାୟନବିତ୍ ଆବିଷ୍କାର କରିଥିବା ଏକ ଜୈବ ପଦାର୍ଥ କଥା ମନେପଡ଼ିଲା । ସେ ସଙ୍ଗେ ସଙ୍ଗେ ଆଲମାରିରୁ ସେ ବୋତଲଟି କାଢ଼ି ଏହାର ଠିପିକୁ ଖୋଲି ସେ ଓ ତାଙ୍କ ବନ୍ଧୁ-

ମାନେ ଶୁଙ୍ଘିବାକୁ ଲାଗିଲେ । ଏହାର ଗନ୍ଧ ବେଶ୍ ମିଠା ବୋଲି ନିଜ ନିଜ ଭିତରେ ଆଲୋଚନା କରୁଁ କରୁଁ ସମସ୍ତେ ଶୋଇପଡ଼ିଲେ ।

କିଛି ସମୟ ପରେ ସିମ୍ପସନଙ୍କ ନିଦ ଭାଙ୍ଗିଗଲା । ସେ ଉଠି ଦେଖିଲେ ଯେ ତାଙ୍କ ବନ୍ଧୁମାନେ ସେମିତି ଚଟାଣରେ ଶୋଇ ପଡ଼ିଛନ୍ତି । ସେ ଦେଖିଲେ ଏ ଜୈବ ପଦାର୍ଥଟି ଉତ୍କୃଷ୍ଟ ଚେତନା-ପହାରକ । ଏହିଠାରୁ କ୍ଲୋରୋଫର୍ମର ଚେତନାପହାରକ ପ୍ରକୃତି ଆବିଷ୍କୃତ ହେଲା । ସେହିଦିନଠାରୁ ସିମ୍ପସନ ଲୋକଙ୍କୁ କ୍ଲୋରୋଫର୍ମ ଦ୍ୱାରା ଅଚେତ କରାଇ ଅପରେସନ କଲେ । ଆସନ୍ନପ୍ରସବା ସ୍ତ୍ରୀ-ଲୋକଙ୍କୁ ମଧ୍ୟ ଅଚେତ କରାଇ ସେ ପିଲା ପ୍ରସବ କରାଉଥିଲେ । ଯେଉଁ ସ୍ତ୍ରୀଲୋକମାନେ ପ୍ରସବ କଷ୍ଟ ସହି ପାରନ୍ତିନି, ତାଙ୍କ ପାଇଁ ଏହି ଉପାୟଟି ବେଶ କାମ ଦେଲା । ସିମ୍ପସନ ଏଥିପାଇଁ ଖୁବ୍ ଲୋକପ୍ରିୟ ହେଲେ, କିନ୍ତୁ ଏଥିରେ ଖ୍ରୀଷ୍ଟଧର୍ମର ଧର୍ମଯାଜକମାନେ ତାଙ୍କ ଉପରେ ବିରକ୍ତ ହେଲେ । ସେମାନେ ମତ ଦେଲେ ଆସନ୍ନ-ପ୍ରସବା ସ୍ତ୍ରୀଲୋକମାନଙ୍କୁ ଏଭଳି ଉପାୟରେ ପ୍ରସବ କରାଇବା ଖ୍ରୀଷ୍ଟଧର୍ମ ବିରୋଧୀ । ସେମାନଙ୍କ ମତରେ ଆଦିମାନବ ଆଦାମ ଓ ଇଭ୍ ଦିନେ ଏକ ନନ୍ଦନକାନନରେ ବିହାର କରୁଥିଲେ । ସେହି ବାଟେ ଭଗବାନ ଯାଉଥିଲେ । ଇଭର ଅାଚରଣରେ ଭଗବାନ ଅପମାନିତ ହୋଇ ଇଭ୍‌କୁ ଅଭିଶାପ ଦେଲେ—"ତୁ ଓ ତୋର ଭବିଷ୍ୟତ ବଂଶଧର ସ୍ତ୍ରୀ-ସମାଜ ସର୍ବଦା ସନ୍ତାନ ପ୍ରସବ କଷ୍ଟରେ ପୀଡ଼ିତ ହେବେ । ତୁମକୁ ସେହି କଷ୍ଟରୁ କେହି ଉଦ୍ଧାର କରି ପାରିବେ ନାହିଁ ।" ସେହିଦିନଠାରୁ ସ୍ତ୍ରୀଲୋକମାନେ ପ୍ରସବ କଷ୍ଟରେ ଦୁଃଖ ପାଇ ଆସୁଛନ୍ତି । ସିମ୍ପସନ ସେମାନଙ୍କ ଏହି କଷ୍ଟକୁ ଲାଘବ କରିବା ଅର୍ଥ ଭଗବାନଙ୍କର ଆଦେଶ ବିରୋଧରେ ଯିବା ।

ଧର୍ମଯାଜକମାନେ ସିମ୍ପସନଙ୍କୁ ଏକ ଧର୍ମଦ୍ରୋହୀ ବୋଲି ଆଖ୍ୟା ଦେଇ ତାଙ୍କ ନାମରେ ମୋକଦ୍ଦମା କଲେ । ସେହି ମୋକଦ୍ଦମା ଢେ଼ର ଦିନ ଧରି ଚାଲିଲା । ପରିଶେଷରେ ମହାରାଣୀ ଭିକ୍ଟୋରିଆ ତାଙ୍କର ଏକ ସନ୍ତାନକୁ ପ୍ରସବ କଲାବେଳେ ସିମ୍ପସନଙ୍କ ସାହାଯ୍ୟ ଲୋଡ଼ିବାରୁ ଏହି ମୋକଦ୍ଦମା ଉଠାଇ ନିଆଗଲା । ସେହିଦିନ ଖାଲି ସିମ୍ପସନଙ୍କ ଜୟ ହେଲାନାହିଁ, ବିଜ୍ଞାନର ଜୟ ହେଲା ।

## ପାଞ୍ଚ

ବୈଜ୍ଞାନିକ ଥେଲସ୍‌ଙ୍କୁ ସାରା ପୃଥିବୀରେ ଆଦି ବୈଜ୍ଞାନିକ ବୋଲି କହନ୍ତି । ତାଙ୍କର ପୂରାନାମ ହେଉଛି ମିଲେଟସର ଥେଲସ । ସେ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ଜୀବିତ ଥିଲେ । ଘର୍ଷଣ ବିଦ୍ୟୁତର ସେ ଆବିଷ୍କାରକ ବୋଲି ସର୍ବତ୍ର ପରିଚିତ । ସେ ମଧ୍ୟ ଜଣେ ବଡ଼ ଜ୍ୟୋତିର୍ବିଦ୍ ଥିଲେ । ଅବଶ୍ୟ ଆମ ପୃଥିବୀ ସମ୍ବନ୍ଧରେ ତାଙ୍କର ବିଚିତ୍ର ଧାରଣା ଥିଲା । ତାଙ୍କ ମତରେ ପୃଥିବୀ ଥାଳି ପରି ଚେପ୍ଟା ଓ ଏହା ସୋଲ ଭଳି ଜଳ ଉପରେ ଭାସୁଛି । ସେ ଦିନେ ଆକାଶକୁ ଅନାଇ ଗ୍ରହ ଓ ତାରକାମାନଙ୍କ ଗତିବିଧି ଲକ୍ଷ୍ୟକରି ଆସୁ ଆସୁ ଗୋଟାଏ ଖାଲରେ ପଡ଼ିଗଲେ । ତାଙ୍କୁ ଗୋଟିଏ ବୁଢ଼ୀ ସେହି ଖାଲରୁ ଉଠାଇ ଆଣିଲା । ବୁଢ଼ୀଟି ପଚାରିଲାରୁ ସେ କହିଲେ ଯେ ସେ ଜଣେ ଜ୍ୟୋତିର୍ବିଦ । ଆକାଶକୁ ଅନାଇ ଗ୍ରହ, ତାରାମାନଙ୍କ ଗତିବିଧି ଲକ୍ଷ୍ୟ କରିବା ତାଙ୍କ କାମ । ଥେଲସଙ୍କ ଏହି କୈଫିୟତ କଥା ଶୁଣି ବୁଢ଼ୀଟି ହସିଦେଇ କହିଲା—"ଆଁ, ତୁମେ ଆକାଶକୁ ଲକ୍ଷ୍ୟକରି ଗ୍ରହ ତାରକାମାନଙ୍କ ଗତିବିଧି ଲକ୍ଷ୍ୟ କର । ତୁମେ ତ ଚାଲୁ ଚାଲୁ ତୁମ ସାମନାରେ ଖାଲ୍‌ଟିଏ ଡିପ ଅଛି, ଜାଣି ନପାରି

ଖାଲରେ ପଡ଼ିଯାଉଛ, ତୁମେ କ'ଣ ଆକାଶକୁ ଅନାଇ ଗ୍ରହ ଉପଗ୍ରହଙ୍କୁ ଲକ୍ଷ୍ୟ କରିବ ?

## ଛଅ

ସେହି ଥେଲସଙ୍କର ଗୋଟିଏ ଗଧ ଥିଲା । ସେ ଗଧ ପିଠିରେ ଲୁଣବସ୍ତା ବୁହନ୍ତି । ସେ ଦେଖିଲେ ତାଙ୍କ ଗଧଟି ଭାରି ଚାଲାକ । ଲୁଣ ବସ୍ତା ପିଠିରେ ବୋହି ଆଣୁଥିଲା ବେଳେ ଯେଉଁଠି ନଦୀ ଅତିକ୍ରମ କରିବାକୁ ପଡ଼ୁଥିଲା, ଗଧ ସେହି ପାଣିରେ କିଛି ସମୟ ଆଣ୍ଠେଇଯାଏ । ଏହା ଫଳରେ କ'ଣ ହୁଏନା, ବସ୍ତାରୁ କିଛି ଲୁଣ ଧୋଇ ହୋଇଯାଏ, ଫଳରେ ଗଧକୁ ହାଲୁକା ଲାଗେ । ଥେଲସ୍ ଯେତେବେଳେ ତାଙ୍କ ଗଧର ଏହି ଚାଲାକି ଜାଣିପାରିଲେ, ଗଧର ସେ ଅଭ୍ୟାସକୁ ଛଡ଼ାଇବା ପାଇଁ ଗଧର ପିଠିରେ ଲୁଣ ପରିବର୍ତ୍ତେ ସ୍ପଞ୍ଜ ବୋହିଲେ । ଗଧ ଯେତେବେଳେ ସ୍ପଞ୍ଜଭାରକୁ ଲୁଣ ଭାର ବୋଲି ଭାବି ଭାର ଲାଘବ କରିବା ପାଇଁ ନଦୀ ପାରି ହୁଏ, ସେ ଜଳରେ ଆଣ୍ଠେଇଯାଏ, ସ୍ପଞ୍ଜ ପାଣି ଶୋଷି ନେଇ ହାଲୁକା ହେବା ପରିବର୍ତ୍ତେ ଭାରି ହୋଇଯାଏ । ଫଳରେ ଗଧ ନିଜ ଭୁଲ ଜାଣି-ପାରେ । ସେ ଏହି ଉପାୟ କରି ଗଧଦ୍ୱାରା ଦିନାକେତେ ଲୁଣ ନବୋହି ସ୍ପଞ୍ଜ ବୋହିଲାରୁ ଗଧର ସେ ଅଭ୍ୟାସ ଦୂର ହେଲା ।

## ସାତ

୧୯୩୧ ମସିହା ପୃଥିବୀପ୍ରସିଦ୍ଧ ପଦାର୍ଥବିଦ୍ୟାବିତ୍ ଓଲଫଗାଙ୍ଗ ପଲି ସର୍ବପ୍ରଥମେ ମୌଳିକ କଣିକା ନିଉଟ୍ରିନୋର ଅବସ୍ଥିତି ଗଣନା ମାଧ୍ୟମରେ ପ୍ରତିପାଦନ କରିଥିଲେ । ଏହି

କଣିକାର ସେମିତି କିଛି ଓଜନ ନାହିଁ କି ଏହା ବିଦ୍ୟୁତ୍‌ ଆବେଶ-ଯୁକ୍ତ ନୁହେଁ । ଏହା ବସ୍ତୁ ଭିତର ଦେଇ ହଜାର ହଜାର ମାଇଲ ଗତିକଲେ ମଧ୍ୟ ଏହାର ବେଗ ହ୍ରାସ ପାଏନି । ସେ ନିଜ ଆବିଷ୍କାରରେ ଉତ୍‌ଫୁଲ୍ଲ ହୋଇ ପ୍ରକାଶ କରିଥିଲେ ଯେ କୌଣସି ବୈଜ୍ଞାନିକ ଯଦି ନିଉଟ୍ରିନୋର ଅବସ୍ଥିତି ନେଇ ଅଭିଜ୍ଞତାତ୍ମକ ସାକ୍ଷ୍ୟ ଦେଇପାରନ୍ତି, ତେବେ ସେ ତାଙ୍କୁ ଏକ ଦାମିକା ମଦ ସାମ୍ପେନ୍‌ ଉପହାର ଦେବେ । ୨୫ ବର୍ଷ ପରେ ପଲି ତାଙ୍କ ବାକ୍ୟ ରକ୍ଷାକଲେ । ହଠାତ୍‌ ଦିନେ ଦେଖାଗଲା ବୈଜ୍ଞାନିକ ସି. କାଓ୍ୱେନ ଓ ଏଫ୍‌ ରିଇନ୍‌ସଙ୍କ ଦୁଆର ମୁହଁରେ ସାମ୍ପେନ ବୋତଲର ଦୁଇଟି ପେଟି ଥୁଆ ହୋଇଛି । ସେମାନେ ଉଠି ଏ ମଦବୋତଲ ପେଟି କେଉଁଠୁ ଆସିଛିବୋଲି ପଚରା ପଚରି କଲାରୁ ନୋବେଲ ପୁରସ୍କାର ବିଜେତା ଓଲଫଗାଙ୍ଗ ପଲି ଏହାକୁ ପଠାଇଛନ୍ତି ବୋଲି ସେମାନେ ଜାଣିବାକୁ ପାଇଲେ । ପଲିଙ୍କ ୨୫ ବର୍ଷ ତଳର ଉକ୍ତ କଥା ସେମାନଙ୍କର ମନେପଡ଼ିଲା ।

## ଆଠ

ପୃଥିବୀପ୍ରସିଦ୍ଧ ଦାର୍ଶନିକ ତଥା ଲୋକପ୍ରିୟ ବିଜ୍ଞାନ ପାଇଁ କଳିଙ୍ଗ ପୁରସ୍କାର ବିଜେତା ବାରଟ୍ରେଣ୍ଡ ରସେଲ ତାଙ୍କ କ୍ଲାସରେ ପଢ଼ାଉ ପଢ଼ାଉ କହିଲେ—ଗଣିତ ବେଳେବେଳେ ଗଣନା ସାହାଯ୍ୟରେ ଭୁଲ ଫଳ ଦେଖାଏ ।

ଜଣେ ପିଲା ପଚାରିଲା, "କେମିତି ସାର୍‌ ? ଗଣିତ ତ ସେମିତି ଭୁଲ କରି ନପାରେ ।" ରସେଲ କହିଲେ, "ଗଣିତରେ ଯେକୌଣସି ଅସମ୍ଭବ କଥାକୁ ସମ୍ଭବ ବୋଲି ପ୍ରମାଣ କରିଦେଇ

ହେବ । ଏମିତି କି ତୁମେ ଗଣନା ସାହାଯ୍ୟରେ ପ୍ରମାଣ କରିଦେଇ ପାରିବ ଏକ ଦୁଇ ସହିତ ସମାନ ।” ପିଲାମାନେ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ । ସେ ବ୍ଲାକବୋର୍ଡ଼ରେ ଗଣନା ଆରମ୍ଭ କଲେ ।

ମନେକର $b = a$

ତା’ ହେଲେ $b^2 = ab$

$b^2 - a^2 = ab - a^2$

$(b + a)(b - a) = a(b - a)$

ଅଥବା $b + \ = a$

ଅଥବା $2a = a$

ତେଣୁ $2 = 1$

ହଠାତ୍ ଗୋଟିଏ ପିଲା ଉଠି ପଚାରିଲା, “ସାର୍ ଆପଣ ଯଦି ଏଠି ଏକକୁ ଦୁଇ ସହିତ ସମାନ କରିଦେଇ ପାରିଲେ, ଆପଣ କଣ ପ୍ରମାଣ କରିଦେଇପାରିବେ ଆପଣ ହେଉଛନ୍ତି ପୋପ୍ ?”

“ହଁ ନିଶ୍ଚୟ, ନ ହେବ କାହିଁକି ? ଏକ ଯଦି ଦୁଇ ସହିତ ସମାନ ହୋଇପାରିଲା, ମୁଁ ପୋପ୍ ସହିତ ସମାନ ନହେବି କାହିଁକି !”

## ନଅ

ବମ୍ବେର ଟାଟା ଇନ୍‌ଷ୍ଟିଚ୍ୟୁଟ ଅଫ୍ ଫଣ୍ଡାମେଣ୍ଟାଲ ରିସର୍ଚ୍ଚ କେନ୍ଦ୍ରରେ ଭାଷଣ ଦେଉଁ ଦେଉଁ ଆମେରିକାର ସଲ୍‌କ ଇନ୍‌ଷ୍ଟି-ଚ୍ୟୁଟର ନିର୍ଦ୍ଦେଶକ ତଥା ସୁବିଖ୍ୟାତ ବୈଜ୍ଞାନିକ ଡକ୍ଟର ଜେ. ବ୍ରୋନୋଉସ୍କି କହିଲେ ବିଜ୍ଞାନ—ଇତିହାସରେ ଏକ ମଜା କଥା

ହେଉଛି, ବାପ ଯେଉଁ କଥା କହି ନୋବେଲ ପୁରସ୍କାର ପାଇଛି, ପୁଅ ସେହି କଥାକୁ ଅସ୍ୱୀକାର କରି ନୋବେଲ ପୁରସ୍କାର ଲାଭ କରିଛି । ଏହି ବାପ ପୁଅ କିଏ ହୋଇପାରନ୍ତି, ଶ୍ରୋତାମାନେ ଆଶ୍ଚର୍ଯ୍ୟ ହେଲେ । ସେ ପୁଣି କହିଲେ, ସେମାନେ ଆଉ କେହି ନୁହଁନ୍ତି, ଇଂରେଜ ବୈଜ୍ଞାନିକ ଜେ·ଜେ· ଟମ୍ପସନ ଓ ତାଙ୍କ ପୁଅ । ଜେ. ଜେ. ଟମ୍ପସନ ଇଲେକ୍ଟ୍ରନକୁ ଏକ କଣିକା ଭାବରେ ପ୍ରତିପାଦନ କରି ୧୯୦୬ ମସିହାରେ ନୋବେଲ ପୁରସ୍କାର ପାଇଲେ । ୧୯୩୭ ମସିହାରେ ତାଙ୍କ ପୁଅ ସାର ଜର୍ଜ ଟମ୍ପସନ ଇଲେକ୍ଟ୍ରନ କଣିକା ନୁହେଁ, ଏକ ତରଙ୍ଗ ବୋଲି ପ୍ରମାଣ କରି ନୋବେଲ ପୁରସ୍କାର ପାଇଥିଲେ ।

## ଦଶ

୧୯୩୭ ମସିହାରେ ସୁବିଖ୍ୟାତ ଇଂରେଜ ବୈଜ୍ଞାନିକ ଲେଖକ ଜେ·ଜି· କ୍ରାଉଥର ଥରେ "ସୁବିଖ୍ୟାତ ମାର୍କିନ ବୈଜ୍ଞାନିକ" ଶିରୋନାମାରେ ଏଡ଼ିସନଙ୍କ ଉପରେ ଏକ ଭାଷଣ ଦେଉଥିଲେ । ସେହି ସଭାରେ ବହୁ ଲୋକ ତାଙ୍କର ଭାଷଣ ଶୁଣିବାକୁ ବସିଥିଲେ । ଆମେରିକାର ବିଶିଷ୍ଟ ବୈଜ୍ଞାନିକ ଏଡ଼ିସନ୍‌ଙ୍କ ଉପରେ ଭାଷଣ ଦେଇ ଦେଇ ସେ ଲକ୍ଷ୍ୟକଲେ ଆଗ ବେଞ୍ଚରେ ଜଣେ ବୃଦ୍ଧଲୋକ ଖୁବ୍ ଆଗ୍ରହର ସହିତ ତାଙ୍କ ଭାଷଣ ଶୁଣୁଛନ୍ତି । ଭାଷଣ ଦେଇ ଦେଇ ସେ ଯେତେବେଳେ କହିଲେ, ଏଡ଼ିସନଙ୍କର ସବୁଠାରୁ ବଡ଼ ଗୁଣ ହେଉଛି —ସେ ଖୁବ୍ ଦକ୍ଷ ସହକାରୀ ବାଛିପାରନ୍ତି ଓ ତାଙ୍କ ଦକ୍ଷ ସହକାରୀଙ୍କ ଭିତରେ ସେ ବିଖ୍ୟାତ ଇଲେକ୍ଟ୍ରିକାଲ ଇଞ୍ଜିନିଅର ଏ·ଇ· କେନେଲିଙ୍କ ନାମ ଯେତେବେଳେ ଉଲ୍ଲେଖ କଲେ, ଭଦ୍ରଲୋକଟି କାହିଁକି ମୁହଁ ଫୁଲାଇ ହେଲଭଳି ଜଣା ପଡୁଥାନ୍ତି ।

କେନେଲ ଭାରତବର୍ଷରେ ଜନ୍ମ ଗ୍ରହଣ କରିଥିଲେ ହେଁ ଏଡ଼ିସନଙ୍କ ଠାରୁ ସହକାରୀ ଭାବରେ ଯେଉଁ ଟ୍ରେନିଂ ପାଇଥିଲେ, ସେହି ଟ୍ରେନିଂ ତାଙ୍କୁ ପୃଥିବୀର ଏକ ପ୍ରସିଦ୍ଧ ବୈଜ୍ଞାନିକ ଭାବରେ ଠିଆ କରାଇଥିଲା । କେନେଲ ହ୍ୱିବ୍‌ସାଇଡ଼ ସ୍ତର ଆବିଷ୍କାର କରି ବିଜ୍ଞାନ କ୍ଷେତ୍ରରେ ସେ ଯେଉଁ ପରାକାଷ୍ଠା ଅର୍ଜନ କଲେ, ଏଡ଼ିସନଙ୍କ ଆଶୀର୍ବାଦ ତା' ପଛରେ ଯେ କାର୍ଯ୍ୟ କରିଥିଲା ଆପଣମାନେ କେବେହି ଭୁଲିଯିବା ଉଚିତ ନୁହେଁ । କେନେଲ ଓ ଏଡ଼ିସନଙ୍କ ବିଷୟରେ ଏହିସବୁ କଥାକୁ ବୃଦ୍ଧଜଣକ ଖୁବ ମନଦେଇ ଶୁଣୁଥିଲେ ଓ ମଝିରେ ମଝିରେ ଖୁସି ହେଉଥିଲେ । ବୃଦ୍ଧଜଣକ ଏଭଳି ତନ୍ମୟ ଭାବରେ ଶୁଣୁଥିବାର ଦେଖି ହ୍ୱାଉଥର ଟିକଏ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । କ୍ଷଣେ ପରେ ସେ ତାଙ୍କୁ ଆସି ପଚାରିଲେ, "ଏଡ଼ିସନ ସମ୍ଭବତଃ ଆପଣଙ୍କର ଖୁବ୍ ପ୍ରିୟ ?"

ବୃଦ୍ଧ ଲୋକଟି କହିଲେ, "ହଁ, ହଁ, ନିଶ୍ଚୟ ନିଶ୍ଚୟ । ତେବେ ଆପଣ କେନେଲଙ୍କ ବିଷୟ ଯାହା କହୁଥିଲେ, ମୁଁ ତାକୁ ଅତ୍ୟଧିକ ଆଗ୍ରହର ସହିତ ଶୁଣୁଥିଲି ।"

ମୁଁ ଆଜ୍ଞା ଆପଣଙ୍କ ନାମ ଜାଣିପାରେ କି ? ହ୍ୱାଉଥର ପଚାରିଲେ ।

"ଏ.ଇ. କେନେଲ ।" ବୃଦ୍ଧଙ୍କଠାରୁ ଉତ୍ତର ଆସିଲା ।



# ଚତୁର୍ଥ ଅଧ୍ୟାୟ

## ଏକ

ବିଶିଷ୍ଟ ଇଂରେଜ ବୈଜ୍ଞାନିକ ପଲ୍. ଏ. ଏମ୍. ଡ଼ିରାକ ତାଙ୍କର ପ୍ରତିବସ୍ତୁ ସମ୍ବନ୍ଧୀୟ ଗବେଷଣାବଳିରେ ସାରା ପୃଥିବୀରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ସେହି ଯୁଗାନ୍ତକାରୀ ଗବେଷଣା ତାଙ୍କୁ ନୋବେଲ ପୁରସ୍କାରର ଅଧିକାରୀ କରିଥିଲା । ପିଲାଟି ଦିନରୁ ସେ ଖୁବ୍ ଲାଜକୁଳା ଥିଲେ । ସେ ଖୁବ୍ କମ କଥା କହନ୍ତି । 'ହଁ' 'ନାଁ' 'ମୁଁ ଜାଣେନି' ହେଲା ମାତ୍ର ତାଙ୍କର କେତୋଟି କଥା । ସେ ଥରେ ପୃଥିବୀର ଅନ୍ୟତମ ବିଶିଷ୍ଟ ଜର୍ମାନ ବୈଜ୍ଞାନିକ ହାଇସେନ-ବର୍ଗଙ୍କ ଘରକୁ ଯାଇଥିଲେ । ହାଇସେନବର୍ଗ ଚମତ୍କାର ପିଆନୋ ବଜାଇ ଜାଣନ୍ତି । ବନ୍ଧୁମାନେ ଗଲେ ତାଙ୍କ ପିଆନୋରେ ନାନା ଗୀତ ବଜାଇ ବନ୍ଧୁମାନଙ୍କୁ ଆପ୍ୟାୟିତ କରନ୍ତି । ଯେଉଁଦିନ ଡ଼ିରାକ ଯାଇଥିଲେ, ସେଦିନ ଡ଼ିରାକଙ୍କୁ ଆପ୍ୟାୟିତ କରିବାପାଇଁ ହାଇସେନବର୍ଗ ଗୋଟିକ ପରେ ଗୋଟିଏ କେତେଗୁଡ଼ିଏ ସ୍ୱର ବଜାଇ ବୁଲିଲେ । ଯେତେବେଳେ ପିଆନୋ ବଜା ସରିଲା, ହାଇସେନବର୍ଗ ଡ଼ିରାକଙ୍କୁ ପଚାରିଲେ, "ତୁମକୁ କେଉଁ ସ୍ୱରଟି ଭଲ ଲାଗିଲା ?"

ପିଆନୋ ବଜା ସମୟରେ ଡ଼ିରାକ ତାଙ୍କର ଗାଣିତିକ ଗଣନାର ସମାଧାନ ନେଇ ଚିନ୍ତା କରୁଥିଲେ । ହାଇସେନ୍‌ବର୍ଗଙ୍କ ପ୍ରଶ୍ନ ଶୁଣି ହଠାତ୍ ପ୍ରକୃତିସ୍ଥ ହୋଇ କହିଲେ, "ହଁ, ହଁ, ଯେଉଁ ସ୍ୱରଟି ବଜାଇବା ପାଇଁ ତୁମେ ଦୁଇଟି ହାତକୁ ଛାଡ଼ି ଦେଉଥିଲ, ସେହି ସ୍ୱରଟି ସବୁଠାରୁ ଭଲ ।"

ହାଇସେନବର୍ଗ ବୁଝିପାରିଲେ, ଡ଼ିରାକ୍ ସେତେବେଳେ ଅନ୍ୟମନସ୍କ ଥିଲେ ।

## ଦୁଇ

ସୁବିଖ୍ୟାତ ଇଂରେଜ ବୈଜ୍ଞାନିକ ଏଡ଼ିଙ୍ଗଟନ୍ ବିଜ୍ଞାନକୁ ଲୋକପ୍ରିୟ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଛନ୍ତି । ଇଂଲଣ୍ଡର ଏକ ଉଚ୍ଚକୋଟୀର ବୈଜ୍ଞାନିକ ତଥା ଚିନ୍ତାନାୟକ ଭାବରେ ସେ ପରିଚିତ । ସେ ଦିନେ ପ୍ରସାରଣଶୀଳ ବିଶ୍ୱ ଉପରେ ଭାଷଣ ଦେଉଥିଲେ । ସେହି ସଭାରେ ଇଂଲଣ୍ଡର ଅନ୍ୟତମ ଚିନ୍ତାନାୟକ ଓ ଲୋକପ୍ରିୟ ବୈଜ୍ଞାନିକ ଲେଖକ ସାର ବାର୍ଟ୍ରେଣ୍ଡ୍ ରସେଲ୍ ମଧ୍ୟ ଉପସ୍ଥିତ ଥିଲେ । ଏଡ଼ିଙ୍ଗଟନ୍ ଭାଷଣ ଦେଉ ଦେଉ କହିଲେ, "ଏହି ବିଶ୍ୱ ଏମିତି ବେଗରେ ଦିନକୁ ଦିନ ପ୍ରସାରିତ ହେଉଛି ଯେ ଏହାର ବେଗ ଆଲୋକର ବେଗଠାରୁ ଅଧିକ । ବିଶ୍ୱରେ ଯଦି ଖୁବ୍ ଶକ୍ତିଶାଳୀ ଡିଟେକ୍ଟର କେବେ ଦେଖା ଦିଅନ୍ତି, ସେହି ଶକ୍ତିଶାଳୀ ଡିଟେକ୍ଟର ମଧ୍ୟ ନିଜ ତତ୍ତ୍ୱାବଧାନରେ ଏହି ବିଶ୍ୱକୁ ରଖିପାରିବେ ନାହିଁ । କାରଣ ସେ ଯଦି କୌଣସି ଆବେଗ ଆଲୋକବେଗରେ ଦିଅନ୍ତି, ତେବେ ତାହା ବିଶ୍ୱର ଶେଷ ଅଂଶରେ ପହଞ୍ଚି ପାରିବ ନାହିଁ ।" ଏହି ଭାଷଣ ଶୁଣୁଶୁଣୁ ବାର୍ଟ୍ରେଣ୍ଡ ରସେଲ୍

ପଚାରିଲେ, "ଏହା ଯଦି ପ୍ରକୃତରେ ସତ ହୋଇଥାଏ ତେବେ, ଭଗବାନ ଏହି ବିଶ୍ୱକୁ କେମିତି ନିଜ ଶାସନାଧୀନରେ ରଖି ପାରିବେ ? ତାଙ୍କ ଆଦେଶ ବିଶ୍ୱର ସେହି ପ୍ରସାରଣଶୀଳ ସ୍ଥାନରେ ତ ପହଞ୍ଚି ପାରିବନି । ତେଣୁ ସବୁ ଗୋଳମାଳ ହୋଇ ବିଶ୍ୱ ଧ୍ୱଂସ ପାଇଯିବ ।"

ଏହି ପ୍ରଶ୍ନ ଶୁଣି ଏଡ଼ିଙ୍ଗଟନ ରସେଲଙ୍କୁ ଆନନ୍ଦରେ କହିଲେ, "ପ୍ରିୟ ବାର୍ଟ୍ରେଣ୍ଡ, ପଦାର୍ଥବିଜ୍ଞାନବିତ୍‌ଙ୍କ ପରିସର ଭିତରକୁ ତୁମ ପ୍ରଶ୍ନଟି ଆସୁନି ବନ୍ଧୁ ।"

## ତିନି

ମ୍ୟାଡ଼ାମ କଉରୀ ପ୍ରସିଦ୍ଧି ଅର୍ଜନ କଲାପରେ ଦିନେ ଆମେରିକାର ଏକ ପ୍ରେସ ପ୍ରତିନିଧି ତାଙ୍କୁ ଦେଖା କରିବାକୁ ଆସିଲେ । ସେ ଆସି ଶୁଣିଲେ ଯେ କଉରୀ ପ୍ୟାରିସ୍‌ରେ ନାହାନ୍ତି । ଛୁଟି କଟାଇବା ପାଇଁ ଏକ ଗାଁରେ ଅଛନ୍ତି । ସେ ଯାଇ ସେଠି ପହଞ୍ଚିଲେ । ସେ ମ୍ୟାଡ଼ାମ କଉରୀଙ୍କୁ ଆଗରୁ ଚିହ୍ନି ନ ଥିଲେ । ଲୋକଙ୍କୁ ପଚାରିବାରୁ ଲୋକେ ତାଙ୍କୁ କଉରୀଙ୍କ ରହିବା ଘର ଦେଖାଇ ଦେଲେ । ସେ ଯାଇ ଦେଖିଲେ—ଏକ ଛୋଟ କୁଡ଼ିଆ, ଏକ ଗାଉଁଲି ସ୍ତ୍ରୀଲୋକ ଭୂଇଁ ଉପରେ ବସି ଜୋତାରୁ ବାଲି ବାହାର କରୁଛି । ସ୍ତ୍ରୀଲୋକଟି କଉରୀଙ୍କର ଗୃହକର୍ତ୍ତୀ ବୋଲି ଭାବି ପ୍ରେସ-ପ୍ରତିନିଧି ପଚାରିଲେ ।

"ତୁମେ କ'ଣ ଏହି ଘରର ଗୃହକର୍ତ୍ତୀ ?"

"ହଁ ।"

"କ'ଣ ମ୍ୟାଡ଼ାମ କଉରୀ ଘରେ ନାହାନ୍ତି ?"

ନା ।

"ସେ ବାହାରକୁ ଯାଇଛନ୍ତି ?"

"ହଁ ।"

"ସେ କ'ଣ ଶୀଘ୍ର ଫେରିଆସିବେ ?"

"ମୋତେ ଜଣା ନାହିଁ ?"

"ତୁମେ ତାଙ୍କର କେତୋଟି ବ୍ୟକ୍ତିଗତ ବିଷୟରେ କିଛି ଖବର ଦେଇପାରିବ ।"

ଏତକ କହି ସମ୍ବାଦଦାତା ଜଣକ ସେଇ ଭୂଇଁ ଉପରେ ବସିପଡ଼ିଲେ କାଗଜ କଲମ ବାହାରକରି ।

"ଦେଖ ଗୋଟିଏ କଥା, ମ୍ୟାଡ଼ାମ କଉରୀ କହିଯାଇଛନ୍ତି, କୌଣସି ପ୍ରେସ୍ ସମ୍ବାଦଦାତା ଯଦି ତାଙ୍କର ବ୍ୟକ୍ତିଗତ ଜୀବନ ବିଷୟରେ ଜାଣିବାକୁ ଚାହିଁବେ, ତେବେ କହିବୁ, ବୈଜ୍ଞାନିକଙ୍କ ବ୍ୟକ୍ତିଗତ ଜୀବନ ବିଷୟରେ ବେଶି ଜାଣିବା ଉଚିତ ନୁହେଁ । ସେମାନଙ୍କ ଆବିଷ୍କାର, ବିଚାରଧାରା ଆଦି ବିଷୟରେ ଅଧିକ ଜାଣିବା ପାଇଁ ସେମାନେ ଆଗ୍ରହୀ ହେବା ଉଚିତ ।"

ପ୍ରେସ୍ ସମ୍ବାଦଦାତାଟି ମହିଳାଙ୍କର ଏଭଳି କଡ଼ା ତାଗିଦ୍‌ରେ ଉଠିପଡ଼ିଲେ । ସ୍ତ୍ରୀଲୋକଟିର ଫଟୋ କେଉଁଠି ଦେଖିଲାଭଳି ତାଙ୍କର ମନେହେଲା । ବହୁତ ଚିନ୍ତା ପରେ ସେ ହଠାତ୍ ତାଙ୍କୁ ସ୍ୱୟଂ ମ୍ୟାଡ଼ାମ କଉରୀ ବୋଲି ଚିହ୍ନିପକାଇଲେ ।

# ଗୃହ

୧୮୮୮ ମସିହା ଅଗଷ୍ଟ ମାସ ପ୍ରଥମ ସପ୍ତାହ । ବିଜ୍ଞାନରେ ଡକ୍ଟରେଟ୍ ଡିଗ୍ରୀ ନେଇ ବିଲାତରୁ ଫେରିଲେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ । ଜାହାଜ କଲିକତା ବନ୍ଦରରେ ଲାଗିବାକୁ ଆଉ ଅଳ୍ପ ସମୟ ବାକି । ପ୍ରଫୁଲ୍ଲ ଚନ୍ଦ୍ର ହଠାତ୍ ପକେଟରେ ହାତ ପୂରାଇଲେ । ଦେଖିଲେ ପଇସା ନାହିଁ । ଜାହାଜରୁ ଓହ୍ଲାଇ କଲିକତା ସହରକୁ ଆସିବେ କେମିତି ? ବାଧ୍ୟହୋଇ ନିଜ ସୁଟକେଶ, ଲୁଗାପଟା, ଜାହାଜର ଏକ କର୍ମଚାରୀ ପାଖରେ ବନ୍ଧା ଦେଇ ତା'ଠାରୁ କିଛି ପଇସା ଧାର ନେଇ ସହରକୁ ଆସିଲେ । ସଙ୍ଗେ ସଙ୍ଗେ ଜଣେ ବନ୍ଧୁଙ୍କ ଘରେ ପହଞ୍ଚି ତାଙ୍କଠାରୁ ଟଙ୍କା ନେଇ ନିଜ ଜିନିଷପତ୍ର ମୁକୁଳାଇ ଆଣିଲେ । ସେ ବିଲାତରେ ଥିଲାବେଳେ ସୁଟ୍ ପିନ୍ଧୁ-ଥିଲେ । ଭାରତରେ ସେ ତ ସବୁଦିନେ ଲୁଗା ପିନ୍ଧି ଆସିଛନ୍ତି, ସୁଟ ପେଣ୍ଟ ପିନ୍ଧି ଲୋକମାନଙ୍କ ଆଗକୁ କେମିତି ଯିବେ ? ନିଜର ତ ଲୁଗା ନାହିଁ, କରିବେ କ'ଣ ? ସେ ବନ୍ଧୁଙ୍କ ପାଖରୁ ଧୋତି, ପଞ୍ଜାବି ଚଦର ଧାର ନେଇ ପିନ୍ଧିଲେ । ତା'ପରେ ସେ ଗାଁକୁ ଗଲେ ନିଜ ଆତ୍ମୀୟମାନଙ୍କୁ ଦେଖା କରିବା ପାଇଁ । ପ୍ରଫୁଲ୍ଲ ଚନ୍ଦ୍ର ଭାରତର ଏକ ବଡ଼ ବୈଜ୍ଞାନିକ ତଥା ପାଶ୍ଚାତ୍ୟ ଚଳଣିରେ ଜଣେ ଅଭ୍ୟସ୍ତ ଲୋକ ହେଲେହେଁ ସେ ଭାରତୀୟ ପୋଷାକ ଛଡ଼ା ଅନ୍ୟ କିଛି ପିନ୍ଧିବାକୁ ଭଲପାଉ ନ ଥିଲେ । ଇଂରେଜୀ ଭାଷାରେ ସୁପଣ୍ଡିତ ହେଲେ ବି ସବୁବେଳେ ନିଜ ମାତୃଭାଷା ବଙ୍ଗଳା କହୁଥିଲେ । ଏପରିକି ଏମ୍.ଏ. ଶ୍ରେଣୀରେ ମଧ୍ୟ ବଙ୍ଗଳାରେ ପାଠ ପଢ଼ାଉଥିଲେ ।

## ପାଞ୍ଚ

ନିଉୟର୍କ ସହରର ହଡ୍‌ସନ୍ ନଦୀ କୂଳରେ ଥିବା ରିଭର ସାଇଡ୍ ଗୀର୍ଜା । ଗୀର୍ଜାଟି ପୂରାପୂରି ଶଙ୍ଖମର୍ମର ପଥରରେ ତିଆରି । ସେଇ ପ୍ରାସାଦ ଭିତରେ ପୃଥିବୀର ଚଉଶହ ସର୍ବଶ୍ରେଷ୍ଠ ମନୀଷୀଙ୍କର ପ୍ରତିକୃତି ରହିଛି ।

୧୯୩୦ ସାଲ ।

ଏକ ପ୍ରୌଢ଼ ଦମ୍ପତି ସେହି ଗୀର୍ଜା ପାଖକୁ ଆସିଲେ । ଭଦ୍ରଲୋକଙ୍କ ମୁଣ୍ଡରେ ଲମ୍ବା ଲମ୍ବା ବାଳ, ହାତରେ ଗୋଟିଏ ବେହେଲା । ପଛରେ ଜନୈକା ନାରୀ । ଯେ ଦେଖିବ ସେ କହିବ ନିଶ୍ଚୟ କୌଣସି ଯାତ୍ରା ଓସ୍ତାଦ । ପ୍ରଥମ ଥର ପାଇଁ ନିଉୟର୍କ ଆସିଥାନ୍ତି । ଗୀର୍ଜାର ସୁଖ୍ୟାତି ଶୁଣି ଦେଖିବାକୁ ଆସିଥିଲେ ।

ସ୍ୱାମୀ ସ୍ତ୍ରୀ ଉଭୟେ ବୁଲି ବୁଲି ପ୍ରତିକୃତିଗୁଡ଼ିକ ଦେଖୁଥିଲେ । ହାତ ଧରାଧରି ହୋଇ ଦେଖୁଥାନ୍ତି । ହଠାତ୍ ସ୍ତ୍ରୀଟି ଗୋଟିଏ ମୂର୍ତ୍ତି ଦେଖି ଚମକପଡ଼ିଲେ । ତାଙ୍କ ପାଟିରୁ ଅଜାଣତରେ ବାହାରି ପଡ଼ିଲା, ହେଇ ଦେଖ ଆଲବର୍ଟ, ତମ ମୂର୍ତ୍ତି । ଆଲବର୍ଟ ଚମକିପଡ଼ିଲେ । ହଁ, ସତେତ ତାଙ୍କରି ମୂର୍ତ୍ତି ! ସେ ମୂର୍ତ୍ତିଟିକୁ ନିରୀକ୍ଷଣ କରିବାକୁ ଲାଗିଲେ । ମୂର୍ତ୍ତିଗୁଡ଼ିକ ସବୁ ମୃତବ୍ୟକ୍ତିଙ୍କର । ଜୀବନ୍ତ ବ୍ୟକ୍ତିଙ୍କ ମୂର୍ତ୍ତି ଭିତରୁ କେବଳ ତାଙ୍କରି ଏହି ମୂର୍ତ୍ତିଟି ଗୋଟିଏ । ମୂର୍ତ୍ତିଟି ତାଙ୍କୁ ଯେମିତି କହୁଥିଲା, "ମୁଁ ତୁମର ପଥର ରୂପାନ୍ତର । ତୁମେ ମୋର ରକ୍ତ ମାଂସର ଶରୀର ।" ମୂର୍ତ୍ତିଟିର ତଳେ ଲେଖାହୋଇଥିଲା, ଜନ୍ମ ୧୮୭୯ ସାଲ ମାର୍ଚ୍ଚ

୧୪ ତାରିଖ । ସେଦିନ ମୃତ୍ୟୁ ତାରିଖ ଲେଖା ନ ଥିଲା । ଆଜି ଯାଅ, ସେଠି ଦେଖିବ ଲେଖାଅଛି, ମୃତ୍ୟୁ—୧୯୫୫ ସାଲ ଅପ୍ରେଲ ମାସ ୧୮ ତାରିଖ । ପ୍ରତିକୃତିଟି ହେଉଛି ପୃଥିବୀର ଶ୍ରେଷ୍ଠ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନ୍ଙ୍କର ।

## ଛଅ

ପୃଥିବୀର ପ୍ରଖ୍ୟାତ ଜ୍ୟୋତିଷୀମାନେ ଭାଗ୍ୟ ଗଣନାକୁ ଘୃଣା କରନ୍ତି । ସେମାନଙ୍କ ମତରେ ଲୋକଙ୍କୁ ପ୍ରତାରଣା କରିବାର ଏହା ଏକ କୌଶଳ । ଘୃଣା କଲେ ବି ପୃଥିବୀର ବହୁ ବଡ଼ ବଡ଼ ଜ୍ୟୋତିଷୀ ଭାଗ୍ୟ ଗଣନା ତଥା ଜାତକ ତିଆରି କରୁଥିଲେ । ପୃଥିବୀର ବଡ଼ ବଡ଼ ଜ୍ୟୋତିଷୀଙ୍କ ଭିତରୁ କେପଲର ଜଣେ । ସେ ଯଦିଓ ଜଣେ ପ୍ରଖ୍ୟାତ ଜ୍ୟୋତିଷୀ, କିନ୍ତୁ ଭାଗ୍ୟ ଗଣନା କରିବା ତାଙ୍କର ଏକ ବଡ଼ ପେସା । ବହୁ ବଡ଼ ବଡ଼ ଲୋକେ, ରାଜା ମହାରାଜାମାନେ ତାଙ୍କ ପାଖକୁ ଭାଗ୍ୟ ଗଣନା ତଥା ଜାତକ ତିଆରି ପାଇଁ ଆସୁଥିଲେ । ଗାଲିଲିଓ ମଧ୍ୟ ଭାଗ୍ୟ ଗଣନା କରି ଜାତକ ତିଆରି କରୁଥିଲେ । ଟାଇକୋ-ଡ଼-ବ୍ରାହେ ଜଣେ ବଡ଼ ଜ୍ୟୋତିଷୀ ଥିଲେ ହେଁ ଜାତକ ଗଣନା କରୁଥିଲେ । କେପଲର ଯଦିଓ ନିଜେ ଭାଗ୍ୟ ଗଣନାରେ ବିଶ୍ୱାସ କରୁ ନଥିଲେ, କିନ୍ତୁ ଅର୍ଥ ଉପାର୍ଜନ ପାଇଁ ସେ ଅନ୍ୟମାନଙ୍କର ଭାଗ୍ୟ ଗଣନା କରିଦେଉଥିଲେ । ସେ ପରିହାସ ଛଳରେ କହୁଥିଲେ, ଜାତକ ଗଣନା ବା ଫଳିତ ଜ୍ୟୋତିଷ (Astrology) ଗାଣିତିକ ଜ୍ୟୋତିଷର (Astronomy) ଜାରଜ କନ୍ୟା ହେଲେହେଁ ଏହି ଜାରଜ କନ୍ୟା ହିଁ ମା'ର ଭରଣପୋଷଣ କରିଥାଏ ।

## ପ୍ଲାଜ୍‌ମା

ବିଜ୍ଞାନର ବେଳେବେଳେ ଗୋଟିଏ ଗୋଟିଏ ଶବ୍ଦ ବିଭିନ୍ନ ଶାଖାରେ ବ୍ୟବହୃତ ହୋଇ ନାନାପ୍ରକାର ଗୋଳମାଳ କରିଥାଏ । ସେହିଭଳି ଶବ୍ଦଟିଏ ହେଲା ପ୍ଲାଜ୍‌ମା । ଜୀବ-ରସାୟନବିତ୍‌ମାନେ ୧୯୫୫ ମସିହା ଠାରୁ ପ୍ଲାଜ୍‌ମା କହିଲେ ରକ୍ତ-ରସକୁ ବୁଝନ୍ତି । ଏହା ରକ୍ତର ଏକ ଅଂଶ, ଏଥିରେ ଲୋହିତ ରକ୍ତକଣିକା ଭାସୁଥାଏ । ଏହାର ପ୍ରାୟ ଶହେବର୍ଷ ପୂର୍ବରୁ ଜୀବବିଜ୍ଞାନବିତ୍‌ମାନେ ପ୍ରୋଟୋପ୍ଲାଜ୍‌ମ ଶବ୍ଦରେ ଏହାକୁ ବ୍ୟବହାର କରିଥିଲେ । ଏହା ହେଉଛି ମନୁଷ୍ୟର ଜୀବନ୍ତ ଅଂଶ । ପରେ ପଦାର୍ଥବିଦ୍ୟାବିତ୍‌ମାନେ ଗ୍ୟାସୀୟାବସ୍ଥାରେ ପରବର୍ତ୍ତୀ ଅବସ୍ଥାକୁ ପ୍ଲାଜ୍‌ମାବସ୍ଥା ବୋଲି କହିଲେ । ଫଳରେ ପ୍ଲାଜ୍‌ମା ପଦାର୍ଥବିଜ୍ଞାନ ଜନ୍ମଲାଭ କଲା । କେତେକ ଇଞ୍ଜିନିଅର ପ୍ଲାଜ୍‌ମା କହିଲେ ଆଉ ଗୋଟାକୁ ବୁଝିଲେ । ସେହିଭଳି ଗୋଟିଏ ଶବ୍ଦକୁ ବିଜ୍ଞାନରେ ଏତେଗୋଟି ବିଭାଗ ବିଭିନ୍ନ ଅର୍ଥରେ ବ୍ୟବହାର କଲାରୁ ନାନା ଗୋଳମାଳ ସୃଷ୍ଟି ହେଲା ।

ଏହି ଗୋଳମାଳର ସମାଧାନ ପାଇଁ ଆମେରିକାରେ ପ୍ଲାଜ୍‌ମା ଶବ୍ଦକୁ ବ୍ୟବହାର କରୁଥିବା ବିଭିନ୍ନ ବୈଜ୍ଞାନିକଙ୍କର ଏକ ସମ୍ମିଳନୀ ବସିଲା । ପ୍ରତ୍ୟେକେ ପ୍ଲାଜ୍‌ମା ଶବ୍ଦକୁ ନିଜର ବୋଲି ଦାବୀ କଲେ । ଯୁକ୍ତିତର୍କ ଏତେ ଗ୍ଲଲିଲା ଯେ କେହି କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିଲେନି ।

ଜଣେକ ଜୀବବିଜ୍ଞାନବିତ୍ ଶେଷରେ ବିରକ୍ତ ହୋଇ ସଭାର ଚେୟାରମାନଙ୍କୁ ଲକ୍ଷ୍ୟକରି କହିଲେ,"ଚେୟାରମ୍ୟାନ ମହାଶୟ,

ଆମେ ବର୍ତ୍ତମାନ ଖୋଜୁଛୁ, ଆମ ଶବ୍ଦଟିକୁ ଆମେ ଫେରାଇ ନେବା ପାଇଁ ।"

ଚେୟାରମ୍ୟାନ ଉଠି କହିଲେ, "ତାହା କେମିତି ହେବ ? ପଦାର୍ଥ ବିଜ୍ଞାନବିତ୍‌ମାନଙ୍କର ଏତେ ପଇସା ଅଛି ଯେ ସେମାନେ ଏହି ଶବ୍ଦଟିକୁ ଖରିଦ କରି ନେଇ ନିଜର କରି ସାରିଲେଣି । ସମସ୍ୟାର ସମାଧାନ ହୋଇପାରିଲାନି । ଏବେ ବି ସେମିତି ରହିଛି ।

## ଆଠ

ବହୁତ ଦିନ ତଳର କଥା । ସାର୍ ସି.ଭି. ରମଣ ନୋବେଲ ପୁରସ୍କାର ପାଇ ସାରିବା ପରେ ସୋଭିଏଟ ରୁଷିଆର ଖାର୍କୋଭ ସହରରେ ଅନୁଷ୍ଠିତ ହେଉଥିବା ତତ୍ତ୍ୱୀୟ ପଦାର୍ଥବିଜ୍ଞାନର ଆନ୍ତର୍ଜାତିକ କନ୍‌ଫରେନ୍‌ସରେ ଯୋଗଦାନ କରି ନିଜ ଆବିଷ୍କାର ସମ୍ବନ୍ଧରେ ଭାଷଣ ଦେଉଥିଲେ । ଭାଷଣ ଶେଷରେ ସେ ଆସି ଉପସ୍ଥିତ ଦର୍ଶକମାନଙ୍କ ମେଳରେ ବସିଛନ୍ତି କି ନାହିଁ, ଜଣେ ସମ୍ବାଦଦାତା ଆସି ତାଙ୍କ ପାଖରେ ପହଞ୍ଚିଯାଇ ତାଙ୍କୁ ଅନୁରୋଧ କଲେ, "ଆପଣ ଆପଣଙ୍କ ଆବିଷ୍କାର ଆଲୋକ ବିଚ୍ଛୁରଣ ଉପରେ ଖଣ୍ଡିଏ ପୁସ୍ତକ ଲେଖନ୍ତୁ । ସାର୍ ସି.ଭି. ରମଣ ନିଜକୁ କେବେ ନ୍ୟୁନ ଭାବରେ ଦେଖନ୍ତିନି । ସେ ଚଟ୍‌କରି କହି ପକାଇଲେ, "ଖଣ୍ଡେ ବହି କ'ଣ ଲେଖିବି ? ଦଶଖଣ୍ଡ ବହି ଲେଖିଲେ ବି ମୋ ଆବିଷ୍କାର କଥା ସରିବନି ।"

## ନଅ

୧୯୩୩ ମସିହାରେ ଆଲବର୍ଟ ଆଇନ୍‌ଷ୍ଟାଇନ ନାଜି ନେତା ହିଟଲରଙ୍କ ଭୟରେ ଜର୍ମାନୀ ଛାଡ଼ି ପଳାଇ ଆସିଲେ । ସେ ଜଣେ

ଇହୁଦୀ ଥିବାରୁ ତାଙ୍କର ଭୟ ଥିଲା, ହିଟଲର ତାଙ୍କୁ ଉତ୍ପୀଡ଼ନ କରିବେ । ସେ ଜର୍ମାନୀରୁ ଆସି ଇଂଲଣ୍ଡରେ ପହଞ୍ଚିଛନ୍ତି କି ନାହିଁ, ତାଙ୍କୁ ସାକ୍ଷାତ୍କାର ନେବାପାଇଁ ଆସିଥିବା ବୈଜ୍ଞାନିକମାନେ କହିଲେ, "ଆପଣ ପଳାଇ ଆସି ଭଲ କରିଛନ୍ତି । ଆପଣଙ୍କ ଆପେକ୍ଷିକ ତଥ୍ୟ ଭୁଲ ବୋଲି ଶତାଧିକ ଜର୍ମାନ ବୈଜ୍ଞାନିକ ମତ ବ୍ୟକ୍ତ କରି ସାରିଲେଣି ।" ଏଥିରେ ଆଇନ୍‌ଷ୍ଟାଇନ୍ ଆଶ୍ଚର୍ଯ୍ୟାନ୍ୱିତ ନ ହୋଇ କହିଲେ, "ଶତାଧିକ ବୈଜ୍ଞାନିକ ? କାହିଁକି ? ମୋର କଣ ଭୁଲ ହୋଇଛି କି ? ତା ଯଦି ହୋଇଥାଏ, ତେବେ ଜଣେ ବୈଜ୍ଞାନିକ ତ ଯଥେଷ୍ଟ ।"

## ଦଶ

ଜର୍ଜ ଓ୍ୱାସିଂଟନ୍ କାର୍ଭର ଆମେରିକାର ଜଣେ ପ୍ରସିଦ୍ଧ କୃଷି ରସାୟନବିତ୍ । ସେ କୃଷି-ରସାୟନ ବିଜ୍ଞାନରେ ଅତିବ ଧୁରୀଣ ଥିଲେ । କୃଷିବିଜ୍ଞାନରେ ତାଙ୍କର ଅଗାଧ ଜ୍ଞାନ ଯୋଗୁଁ ଆମେରିକାର ବଡ଼ ବଡ଼ କୃଷିବିତ୍ ଓ କୃଷକମାନଙ୍କ ମଧ୍ୟରେ ସେ ଖୁବ୍ ଲୋକପ୍ରିୟ ଥିଲେ । ତାଙ୍କୁ ବହୁ କୃଷିବିତ୍ ନାନା ଉପହାର ଦେଲେହେଁ ସେଗୁଡ଼ିକୁ ସେ ବ୍ୟବହାର ନକରି ଏଣେ ତେଣେ ଥୋଇ ଦେଉଥିଲେ । ପରେ ପରେ ସେ ଉପହାର କଥା ଭୁଲି ଯାଉଥିଲେ । ଥରେ ଜର୍ଜିଆ ଷ୍ଟେଟ୍‌ର ଜଣେ ଧନୀ କୃଷକ ଆସି ତାଙ୍କୁ ପଚାରିଲେ, "ଆପଣ କେଉଁ ଜିନିଷକୁ ଖୁବ୍ ଭଲ ପାଆନ୍ତି ? ହସି ହସି କାର୍ଭର କହିଲେ, "କାହିଁକି ? ମୁଁ ତ ପ୍ରତ୍ୟେକ ଜିନିଷକୁ ଭଲପାଏଁ ।"

କୃଷକ ଜଣକ ପଚାରିଲେ, "ଆପଣଙ୍କୁ ଉପହାର ଦିଆ ଯାଉଥିବା ଜିନିଷଗୁଡ଼ିକୁ ଆପଣ ବ୍ୟବହାର କରୁନାହାନ୍ତି କାହିଁକି ?"

"ମୁଁ ତ ମୋ କାମରେ ବ୍ୟସ୍ତ । କେତେବେଳେ ବେଳ ପାଉଚ୍ଛି ଯେ ବ୍ୟବହାର କରିବି ?"

"ମୁଁ ଆପଣଙ୍କୁ ଏମିତି ଗୋଟିଏ ଉପହାର ଦେବାକୁ ଚାହେଁ, ଆପଣ ଯେମିତି ତାକୁ ଅନବରତ ବ୍ୟବହାର କରିବେ ଓ ବ୍ୟବହାର କରିବା ଯୋଗୁଁ ଆପଣ ମୋତେ ସବୁଦିନେ ମନେ-ରଖିଥିବେ । କହନ୍ତୁ, ଆପଣଙ୍କର ପ୍ରିୟ ଜିନିଷ କ'ଣ ?"

ହସିଲେ କାର୍ଭର । କହିଲେ, "ଆପଣ ଉପହାର ପାଇଁ ଏତେ ବ୍ୟସ୍ତ ହୋଇପଡ଼ୁଛନ୍ତି କାହିଁକି ?"

"ଆପଣଙ୍କର ସବୁଠାରୁ ପ୍ରିୟ ଜିନିଷ କ'ଣ ଆଗେ କହିଲେ ?"

"ହୀରା ମୋର ଅତି ପ୍ରିୟ ବସ୍ତୁ । ମୁଁ ହୀରାକୁ ଖୁବ୍ ଭଲପାଏ ।"

ତହିଁ ପରଦିନ ଧନୀ କୃଷକଟି ଗୋଟିଏ ପ୍ଲାଟିନମ୍ ମୁଦିରେ ହୀରା ବସାଇ ହୀରାଖଚିତ ପ୍ଲାଟିନମ୍ ମୁଦିଟିକୁ କାର୍ଭରଙ୍କଠାକୁ ପଠାଇଦେଲେ । ଆଶା, କାର୍ଭର ଏହାକୁ ସର୍ବଦା ଅଙ୍ଗୁଳିରେ ପିନ୍ଧି ବ୍ୟବହାର କରିବେ ।

କିଛିଦିନ ପରେ କୃଷକଟି କାର୍ଭରଙ୍କ ଘରକୁ ଦିନେ ବୁଲି ଆସିଲେ । ଆସିଲାବେଳେ ଭାବୁଥିଲେ କାର୍ଭର ନିଶ୍ଚୟ ମୁଦିଟିକୁ ନିଜ ଅଙ୍ଗୁଳିରେ ପିନ୍ଧିଥିବେ ।

ସେ ଆସି ଦେଖିଲେ, କାର୍ଭର ମୂର୍ତ୍ତିଟିକୁ ପିନ୍ଧି ନାହାନ୍ତି । ସେ ବଡ଼ ବ୍ୟସ୍ତ ହୋଇ ପଚାରିଲେ—"ଆପଣଙ୍କୁ ମୂର୍ତ୍ତିଟି ପସନ୍ଦ ହେଲାନି ବୋଧେ ?"

"ନାହିଁ, ନାହିଁ, ଅତି ସୁନ୍ଦର ହୋଇଛି । କିଏ କହିଲା ପସନ୍ଦ ହୋଇନି ବୋଲି ? ବଡ଼ ସୁନ୍ଦର ମୂର୍ତ୍ତିଟିଏ । ଦେଖୁନାହାନ୍ତି, ମୂର୍ତ୍ତିଟିକୁ ମୁଁ କେମିତି ଯତ୍ନରେ ସାଇତି ରଖିଛି ।" ଏତିକି କହି ସେ ଧନୀ କୃଷକଟିକୁ ନିଜ ଲୁହା ଆଲମାରିରେ ଖୁବ୍ ଯତ୍ନରେ ସଜାଇ ରଖିଥିବା ନିଜ ଆବିଷ୍କୃତ ବହୁ ଖଣିଜ ଦ୍ରବ୍ୟକୁ ସେ ଦେଖାଇଲେ । କୃଷକଟି ଦେଖିଲେ, ତାର ଭିତରେ ତାଙ୍କ ପ୍ରଦତ୍ତ ହୀରାମୂର୍ତ୍ତିଟି ଏକ ଖଣିଜ ପଦାର୍ଥ ଭାବରେ ଖୁବ୍ ଯତ୍ନରେ ସାଇତି କରି ରଖାଯାଇଛି ।



# ପଞ୍ଚମ ଅଧ୍ୟାୟ

## ଏକ

ଊନବିଂଶ ଶତାବ୍ଦୀରେ ସାର୍ ଉଇଲିୟମ ହାରସେଲ୍ ଥିଲେ ଇଂଲଣ୍ଡର ପ୍ରଧାନ ଜ୍ୟୋତିର୍ବିଜ୍ଞାନବିତ୍ । ସେ ଇଉରେନ୍ସ ଗ୍ରହକୁ ଆବିଷ୍କାର କରି ଅମର ହୋଇଛନ୍ତି । ତାଙ୍କ ପୃଥିବୀ ପ୍ରସିଦ୍ଧ ଆବିଷ୍କାର ପାଇଁ ଇଂଲଣ୍ଡର ସମ୍ରାଟ ଜର୍ଜ ତୃତୀୟ ତାଙ୍କୁ ରାଜ-ଜ୍ୟୋତିର୍ବିଦ୍ ଭାବରେ ନିଯୁକ୍ତ ଦେଇଥିଲେ ।

ଗ୍ରହ, ଉପଗ୍ରହ, ନକ୍ଷତ୍ରମାନଙ୍କୁ ଦେଖିବା ପାଇଁ ଉଇଲିୟମ୍ ହାରସେଲ ବହୁତ ବଡ଼ ବଡ଼ ଦୂରବୀକ୍ଷଣଯନ୍ତ୍ର ତିଆରି କରୁଥିଲେ । ସେ କହୁଥିଲେ ଯେ ଏହି ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ସ୍ୱର୍ଗକୁ ଦେଖିପାରିବେ । ସେଥିପାଇଁ ସେ ଯୁଗରେ ଇଂଲଣ୍ଡର ବହୁ ବଡ଼ ବଡ଼ ଲୋକ ଗୋଟିଏ ଗୋଟିଏ ଦୂରବୀକ୍ଷଣଯନ୍ତ୍ର କିଣି ନିଜ ପାଖରେ ରଖୁଥିଲେ । କ'ଣ ନା, ହେଲେ ନା ହେଲେ ସେମାନେ ଏହା ସାହାଯ୍ୟରେ ସ୍ୱର୍ଗକୁ ଦେଖିପାରିବେ । ଇଂଲଣ୍ଡର ଅତି ବିଖ୍ୟାତ ରାଜନୀତିଜ୍ଞ ସାର୍ ଉଇଲିୟମ ପିଟ୍ ସେମାନଙ୍କ ଭିତରୁ ଜଣେ । ସ୍ୱର୍ଗକୁ ଦେଖିବା ଆଶାରେ ସେ ବି ଗୋଟିଏ ଦୂରବୀକ୍ଷଣ କିଣିଥିଲେ ।

ଦିନେ ଇଂଲଣ୍ଡର ସମ୍ରାଟ ଜର୍ଜ ତୃତୀୟ ଇଂଲଣ୍ଡର କେଣ୍ଟରବରୀ ଆର୍ଚବିଶପ୍‌ଙ୍କ ସହିତ ଦୂରବୀକ୍ଷଣ ଯନ୍ତ୍ର ଦେଖିବାପାଇଁ ହାରସେଲ୍‌ଙ୍କ ଦୂରବୀକ୍ଷଣଯନ୍ତ୍ର ତିଆରି କାରଖାନାରେ ଯାଇ ପହଞ୍ଚିଲେ । ତାଙ୍କ କାରଖାନାରେ ୪୦ ଫୁଟ ଲମ୍ବବିଶିଷ୍ଟ ଏକ ବିରାଟ ଲୁହା ନଳ ଥୁଆ ହୋଇଥିଲା । ଏହା ଭିତରେ କ'ଣ ଅଛି ବୋଲି ଆର୍ଚବିଶପ ହାରସେଲ୍‌ଙ୍କୁ ପଚାରିଲେ । ହାରସେଲ୍ କହିଲେ, "ଏହା ଭିତରେ କ'ଣ ଅଛି, ଆପଣମାନଙ୍କୁ ମୁଁ ଦେଖାଇ ଦେବି ।" ତେଣୁ ହାରସେଲ୍, ଆର୍ଚବିଶପ ଓ ସମ୍ରାଟ ଏହା ଭିତରେ କ'ଣ ଅଛି ଦେଖିବା ପାଇଁ ଏହା ଭିତରକୁ ପଶିଲେ । କିଛିଦୂର ଗଲାପରେ ଆର୍ଚବିଶପ ଏହା ଭିତରେ ଆଉ ଆଗେଇ ପାରିଲେନି । ତାଙ୍କ ପଛରେ ହାରସେଲ ଆସୁଥିଲେ । ଆର୍ଚବିଶପଙ୍କୁ ଥମେଇ ଯିବାର ଦେଖି ତାଙ୍କୁ ସାହାଯ୍ୟ କରିବାପାଇଁ ନିଜ ହାତ ବଢ଼ାଇଦେଇ କହିଲେ, "ମହାରାଜ, ମୋ ହାତ ଧରି ଚାଲନ୍ତୁ । ମୁଁ ଆପଣଙ୍କୁ ସ୍ୱର୍ଗକୁ ଯିବା ବାଟ ଦେଖାଇଦେବି ।"

## ଦୁଇ

ଆଲଫ୍ରେଡ୍ ନୋବେଲ ବିସ୍ଫୋରକ ଡିନାମାଇଟ୍ ଆବିଷ୍କାର କରି ଏତେ ଧନୀ ହୋଇଗଲେ ଯେ ସେ ଯୁଗରେ ତାଙ୍କୁ ପୃଥିବୀର ସବୁଠାରୁ ଅଧିକ ଭାଗ୍ୟଶାଳୀ ବ୍ୟକ୍ତି ବୋଲି କୁହା ଯାଉଥିଲା । ତାଙ୍କର ଧନରତ୍ନର ଗାରିମା ସମସ୍ତଙ୍କ ମୁହଁରେ ପ୍ରକାଶ ପାଉଥିଲା । ଲୋକେ କହୁଥିଲେ ଧନୀ ହେବତ ଆଲଫ୍ରେଡ୍ ନୋବେଲଙ୍କ ଭଳି ଧନୀ ହେବ । ଅସୁମାରି ଧନରତ୍ନରେ ସେ ଭାସୁଥିଲେ । ହଠାତ୍ ଦିନେ ଖବରକାଗଜରେ ବାହାରି ପଡ଼ିଲା,

ଆଲଫ୍ରେଡ଼ ନୋବେଲ ଆଉ ଇହଧାମରେ ନାହାନ୍ତି । ତାଙ୍କର ମୃତ୍ୟୁ ହୋଇଯାଇଛି । ଏହା ଖବରକାଗଜରୁ ପଢ଼ି ଆଲଫ୍ରେଡ଼ ନୋବେଲ ଆଶ୍ଚର୍ଯ୍ୟ ହୋଇଗଲେ । ପ୍ରକୃତରେ ଆଲଫ୍ରେଡ଼ଙ୍କ ଭାଇ ଲୁଡ଼୍‌ଉଇଗ୍ ତହିଁପୂର୍ବଦିନ ଇହଲୀଳା ସମ୍ବରଣ କରିଥିଲେ । ଖବରକାଗଜବାଲା ପ୍ରକୃତ କଥା ଭଲଭାବରେ ନ ଜାଣି ଆଲଫ୍ରେଡ଼ ନୋବେଲ ମରିଗଲେ ବୋଲି ପ୍ରଚାର କରିଦେଲେ । ସମ୍ପାଦକୀୟରେ ଲେଖାଥିଲା, ଯେ ହେଉଛନ୍ତି ମୃତ୍ୟୁର ଦୂତ, ତାଙ୍କର ମୃତ୍ୟୁ ହୋଇଯାଇଛି । ବିସ୍ଫୋରକର ବ୍ୟବହାରରେ ଭୟଭୀତ ହୋଇ ବିସ୍ଫୋରକ ଓ ଏହାର ଉଦ୍ଭାବକଙ୍କୁ ଲୋକେ ମୃତ୍ୟୁର ଦୂତ ଆଖ୍ୟା ଦେଇଥିଲେ । ଏହି ଖବରଟି ପଢ଼ି ଆଲଫ୍ରେଡ଼ ବଡ଼ ଦୁଃଖିତ ହେଲେ । ସେ ଭାବିଲେ, ପୃଥିବୀର ବଂଶଧରମାନେ ଯଦି ତାଙ୍କୁ ମୃତ୍ୟୁର ଦୂତ ଭାବରେ ଦେଖନ୍ତି, ତେବେ ତାଙ୍କ ଉଦ୍ଭାବନର ସାର୍ଥକତା କେଉଁଠି ? ସେ ତାଙ୍କର ଉଦ୍ଭାବନ ଫଳରେ ସାରା ପୃଥିବୀରେ କେତେ ଉପକାର କଲେ, ମଣିଷ ଦ୍ୱାରା ଯେଉଁ କାମ କରି ହେଉ ନଥିଲା, ସେ ତାକୁ ଅନାୟାସରେ ସମ୍ପାଦନ କରି ପାରିଲେ । ବଡ଼ ବଡ଼ ପାହାଡ଼କୁ ଉଡ଼ାଇଦେଇ ସେଠି ସମତଳ ଭୂମି ତିଆରି କଲେ । ପାହାଡ଼ ପର୍ବତ ଭିତରେ ସୁଡ଼ଙ୍ଗ କରି ଯିବା ଆସିବା ସୁବିଧା କଲେ । ଏତେ କରିବା ସତ୍ତ୍ୱେ ଯଦି ତାଙ୍କୁ ଲୋକେ ଏଭଳି ଆଖ୍ୟା ଦେଲେ, ତେବେ ସେ ଉଦ୍ଭାବନର ଗୌରବ କେଉଁଠି ? ତେଣୁ ସେ ଭାବିଲେ, ସେ ଏମିତି କିଛି କାମ କରିବେ ଯେମିତିକି ଲୋକେ ତାଙ୍କୁ ଚିରଦିନ ପାଇଁ ମୃତ୍ୟୁର ଦୂତ ଭାବରେ ମନେ ନରଖି ମାନବ ସମାଜର ବନ୍ଧୁ ଓ ହିତକାଂକ୍ଷୀ ଭାବରେ ମନେ ରଖିବେ । ଏହି ସମୟରେ ତାଙ୍କ ମା'ଙ୍କର ମୃତ୍ୟୁ ହେଲା । ତେଣୁ

ସେ ମା'ଙ୍କର ମୃତ୍ୟୁର ଠିକ୍ ପରେ ପରେ ସ୍ଥିର କଲେ ଯେ ସେ ତାଙ୍କ ଅର୍ଜିତ ସମସ୍ତ ସମ୍ପତ୍ତିକୁ ଏକ ଦାତବ୍ୟ ଅନୁଷ୍ଠାନରେ ପରିଣତ କରି ସେହି ସମ୍ପତ୍ତିର ସୁଧରୁ କେତେଗୁଡ଼ିଏ ପୁରସ୍କାର ଦେବାର ବ୍ୟବସ୍ଥା କରିବେ । ସେ ଯାହା ଭାବିଲେ ଠିକ୍ ତାହା ହିଁ କଲେ । ଫଳରେ ନୋବେଲ ପୁରସ୍କାରର ଜନ୍ମ ହେଲା । ଏହା ୧୮୯୮ ମସିହା କଥା । ୧୮୯୯ ମସିହାରେ ସେ ମଲେ । ୧୯୦୦ ମସିହା ଅର୍ଥାତ୍ ତାଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀଠାରୁ ପାଞ୍ଚ ଗୋଟି ନୋବେଲ ପୁରସ୍କାର ରସାୟନ ବିଜ୍ଞାନ, ପଦାର୍ଥ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ସାହିତ୍ୟ ଓ ଶାନ୍ତି ପ୍ରତିଷ୍ଠା ପାଇଁ ଶ୍ରେଷ୍ଠ କୃତୀମାନଙ୍କୁ ଦିଆ ହୋଇ ଆସୁଛି । ଏହା ହେଉଛି ବର୍ତ୍ତମାନ ସାରା ପୃଥିବୀରେ ସବୁଠାରୁ ବଡ଼ ସମ୍ମାନ । ନୋବେଲ ପୁରସ୍କାର ସମ୍ମାନଠାରୁ ଆଉ ବଡ଼ ସମ୍ମାନ ପୃଥିବୀରେ ନାହିଁ ।

## ତିନି

ଫରାସୀ ବିପ୍ଳବ ସମୟରେ ଫାଶୀ ଦେବା ଏକ ନିତ୍ୟ ନୈମିତ୍ତିକ ଘଟଣା ଥିଲା । ସେତେବେଳେ ଫାଶୀଖୁଣ୍ଟରେ ଝୁଲିବା ଏକ ସାଧାରଣ କଥା ହୋଇଗଲା । କେତେ ବଡ଼ ବଡ଼ ବୈଜ୍ଞାନିକ, ରାଜନୀତିଜ୍ଞ, ଲେଖକ, ସମାଲୋଚକ, କବି, ଔପନ୍ୟାସିକ ଯେ ଫାଶୀଖୁଣ୍ଟରେ ଝୁଲିଲେ, ତାର କଳନା ନାହିଁ । ଅଷ୍ଟାଦଶ ଶତାବ୍ଦୀର ଶ୍ରେଷ୍ଠ ରସାୟନବିତ୍ ଲେଭୟସିୟର ବିପ୍ଳବୀମାନଙ୍କ ଦ୍ୱାରା ଧରା ହୋଇ ଫାଶୀ ଖୁଣ୍ଟରେ ଝୁଲିଥିଲେ । ବିପ୍ଳବୀମାନେ ବାଛି ବାଛି ବଡ଼ ବଡ଼ ବୈଜ୍ଞାନିକ, ଲେଖକମାନଙ୍କୁ ଫାଶୀ ଦେଉଥିଲେ, ଯେଉଁମାନେ କି ଆଡ଼ମ୍ବରପୂର୍ଣ୍ଣ ଜୀବନଯାପନକୁ ଖୁବ୍ ପସନ୍ଦ କରୁଥିଲେ । ସେ ଯୁଗରେ ଯେଉଁମାନେ ଆଭିଜାତ୍ୟକୁ ଉଚ୍ଚ

ଆସନ ଦେଉଥିଲେ, ଆଭିଜାତ୍ୟଭରା ଜୀବନଯାପନକୁ ବାଛି ନେଉଥିଲେ, ସେମାନଙ୍କୁ ବିପ୍ଳବୀମାନେ ଫାଶୀଖୁଣ୍ଟରେ ଝୁଲାଇବାକୁ ଭୁଲୁ ନଥିଲେ । କିନ୍ତୁ ଅତି ଆଶ୍ଚର୍ଯ୍ୟଜନକ ଭାବରେ ଫ୍ରାନ୍ସର ସୁବିଖ୍ୟାତ ଜ୍ୟୋତିର୍ବିଦ୍ ଲାଲାଣ୍ଡେ ସେମାନଙ୍କ କବଳରୁ ରକ୍ଷା ପାଇ ଯାଇଥିଲେ । ସେ ଏହି ବିପ୍ଳବ କାଳରେ ନିଜ ପର୍ଯ୍ୟବେକ୍ଷଣରେ ଏତେ ମଜ୍ଜି ଯାଇଥିଲେ ଯେ ବାହାରେ କ'ଣ ହେଉଛି ତାଙ୍କୁ ଜଣାପଡ଼ି ନଥିଲା । ସେଥିପାଇଁ ସେ କେବେ ବାହାରକୁ ଆସି ନଥିଲେ । ତେଣୁ ବିପ୍ଳବୀମାନେ ତାଙ୍କ କଥା ପୂରାପୂରି ଭୁଲି ଯାଇଥିଲେ ।

ବିପ୍ଳବ ପରେ ପରେ ଯେତେବେଳେ ସାଧାରଣ ସମୟ ଆସିଲା, ତାଙ୍କର ଜଣେ ବନ୍ଧୁ ତାଙ୍କୁ ପଚାରିଲେ, "ହଇହେ, ତୁମେ କେମିତି ରକ୍ଷା ପାଇଗଲ ? ତୁମ ସାଙ୍ଗସାଥୀ ବୈଜ୍ଞାନିକମାନେ ଫାଶୀ ପାଇ ଶେଷ ହୋଇଗଲେ, ଅଥଚ ତୁମେ କେମିତି ରହିଗଲ ?"

ସେ ଉତ୍ତର ଦେଲେ, "ମୋ ନକ୍ଷତ୍ର ମୋତେ ରକ୍ଷା କରିଦେଲା । ସେଥିପାଇଁ ମୁଁ ମୋ ନକ୍ଷତ୍ରମାନଙ୍କୁ ଧନ୍ୟବାଦ ଦେବି । I must thank my stars !"

## ଗୁର

ବଡ଼ ବିଚିତ୍ର, ଏ ଦୁନିଆ ବେଳେବେଳେ ଏମିତି ହୁଏ, ବଡ଼ ବଡ଼ ଉଦ୍ଭାବନର ପ୍ରକୃତ ଉଦ୍ଭାବକ ସମ୍ମାନିତ ନ ହୋଇ ଉଦ୍ଭାବନ କରି ନଥିବା ଲୋକେ ସମ୍ମାନିତ ହୋଇଥାନ୍ତି । ସେଭଳି ଗୋଟିଏ ଉଦ୍ଭାବନ ହେଉଛି ବୁନ୍‌ସେନ ବର୍ଣ୍ଣର ବା ବୁନସେନ ଜ୍ୱାଳକ । ସ୍କୁଲ-କଲେଜ ଛାତ୍ରଛାତ୍ରୀମାନଙ୍କର ବୁନସେନ ବର୍ଣ୍ଣର ଅତି ଜଣାଶୁଣା ।

ରସାୟନ ବିଜ୍ଞାନର ଛାତ୍ର ବୁନସେନ ବର୍ଣ୍ଣର ସହିତ ବେଶ ପରିଚିତ । ପ୍ରତିଦିନ ବିଜ୍ଞାନାଗାରରେ ଏହାର ଦର୍ଶନ ନକଲେ ନହୁଏ । ଅନେକେ ଭାବନ୍ତି, ଏହି ବର୍ଣ୍ଣରର ଉଦ୍ଭାବକ ହେଉଛନ୍ତି ଜର୍ମାନ ବୈଜ୍ଞାନିକ ରବର୍ଟ ବୁନସେନ୍ । ତେଣୁ ତାଙ୍କର ନାମାନୁସାରେ ଏହା ନାମିତ । କିନ୍ତୁ ଏହା ଠିକ ନୁହେଁ । ବୁନ୍‌ସେନ୍ ଏହାକୁ ଉଦ୍ଭାବନ କରି ନାହାନ୍ତି । ସେ ନିଜ ଗବେଷଣାଗାରରେ ଏହାକୁ ବହୁଳ ପରିମାଣରେ ବ୍ୟବହାର କରିଥିବାରୁ ଏହାର ନାମକରଣ ବୁନ୍‌ସେନ୍ ବର୍ଣ୍ଣର ହୋଇଛି । କେତେକ କହନ୍ତି ଏହାର ପ୍ରକୃତ ଉଦ୍ଭାବକ ହେଉଛନ୍ତି ଇଂରେଜ ବୈଜ୍ଞାନିକ ମାଇକେଲ ଫାରାଡ଼େ, ତା' ବି ଠିକ ନୁହେଁ । ଏହା ଆଉ ଏକ ଭୁଲ କଥା । ଫାରାଡ଼େ ଏହାକୁ ଉଦ୍ଭାବନ କରି ନାହାନ୍ତି । ଏହାର ପ୍ରକୃତ ଉଦ୍‌ଭାବକ ହେଉଛନ୍ତି ଜର୍ମାନୀର ହାଇଡେଲବର୍ଗ ସହରରେ ଥିବା ଜନୈକ ଅନାମଧେୟ ମେକାନିକ ଡେସାଗା । ୧୮୫୫ ମସିହା ମେ ମାସ ୧୨ ତାରିଖରେ ବୁନ୍‌ସେନ୍ ନିଜେ ତାଙ୍କ ପତ୍ରରେ ଲେଖିଥିଲେ ଯେ ଡେସାଗା ଏପରି ଏକ ଜ୍ୱାଳକ ଉଦ୍‌ଭାବନ କରିଛନ୍ତି ଯାହାକି ତାଙ୍କ ପ୍ରଦର୍ଶିତ ଏକ ପଦ୍ଧତି ଉପରେ ନିର୍ମିତ । ଏହି ପଦ୍ଧତିଟି ଡେସାଗାଙ୍କର ନିଜର । ସେ ତାଙ୍କ ପଦ୍ଧତି ଦ୍ୱାରା ମୋଟେ ପ୍ରଭାବିତ ହୋଇ ନାହାନ୍ତି । ଡେସାଗାହିଁ ସେହି ଜ୍ୱାଳକର ପ୍ରକୃତ ଉଦ୍‌ଭାବକ, ସେ ବୁନ୍‌ସେନ୍ ନୁହଁନ୍ତି, ଯଦିଓ ଏହା ତାଙ୍କ ନାମ ଦ୍ୱାରା ଖ୍ୟାତ ।

ବୁନସେନ ବର୍ଣ୍ଣରର ପ୍ରକୃତ ନାମ ହେବା କଥା—ଡେସାଗା ବର୍ଣ୍ଣର । ଭାଗ୍ୟଚକ୍ରର ବିଡ଼ମ୍ବନା, ଉଦ୍‌ଭାବନ କଲା କିଏ, ନାଁ ହେଲା କାହାର ?

ସେହିଭଳି ଆଉ ଏକ ଉଦ୍‌ଭାବନ ହେଉଛି ଡେଭିଙ୍କ ନିରାପଦ ପ୍ରଦୀପ (Davy's safety lamp) । ଏହା ଆୟୁଉରେ ରଖା-ଯାଇଥିବା ଏକ ପ୍ରଦୀପ, ଯାହାକୁ ଖଣି ଭିତରେ ବ୍ୟବହାର କଲେ, ବିସ୍ଫୋରଣ ଘଟେ ନାହିଁ । ପୂର୍ବକାଳରେ ଖଣିମାନଙ୍କ ଭିତରେ ଘନ ଅନ୍ଧକାର ଯୋଗୁଁ ଶ୍ରମିକମାନେ କାମ କରିପାରୁ ନଥିଲେ । ଅନ୍ଧାର ଦୂର କରିବା ପାଇଁ ସେ କାଳରେ ଆଜିକାଲିକା ଭଳି ବିଦ୍ୟୁତ୍ ବତି ନଥିଲା । ଲୋକେ ଲଣ୍ଠନ, ଡିବିରି ଆଦି ନେଇ ଖଣି ଭିତରକୁ ଯାଉଥିଲେ । ଡିବିରି କି ଲଣ୍ଠନ ନେଉଥିଲେ ଖଣି ଭିତରର ଦହନଶୀଳ ଗ୍ୟାସ ଓ ବାୟୁର ଅମ୍ଳଜାନ ଡ଼ିବିରିର ଆଲୋକଶିଖା ସଂସ୍ପର୍ଶରେ ଆସି ବିସ୍ଫୋରିତ ହେଉଥିଲା, ଫଳରେ ଖଣି ସବୁ ଧ୍ୱଂସ ପାଇଯାଉଥିଲା, ସେଥିସହିତ ଏହା ଭିତରେ କାମ କରୁଥିବା ଶ୍ରମିକମାନେ ମଧ୍ୟ । ଖଣି-ଶ୍ରମିକମାନଙ୍କୁ ଏହି ବିପଦରୁ ରକ୍ଷା କରୁଥିଲା ଡେଭିଙ୍କ ନିରାପଦ ପ୍ରଦୀପ ।

ଅବଶ୍ୟ ଏହା ସତ୍ୟ ଯେ ଡେଭି ଖଣି-ଶ୍ରମିକମାନଙ୍କ ପାଇଁ ଗୋଟିଏ ପ୍ରକାର ପ୍ରଦୀପ ଉଦ୍‌ଭାବନ କରିଥିଲେ । କିନ୍ତୁ ଏହା ନିରାପଦ ନଥିଲା । ତତ୍କାଳୀନ ବ୍ରିଟିଶ ସରକାରଙ୍କ ଏକ କମିଟି ଯେତେବେଳେ ଏହିଭଳି କେତେକ ନିରାପଦ ପ୍ରଦୀପକୁ ଖଣି ପାଇଁ ଅନୁମତି ଦେବା ଉଦ୍ଦେଶ୍ୟରେ ପରୀକ୍ଷା କଲେ, ଡେଭିଙ୍କ ଉଦ୍‌ଭାବିତ ପ୍ରଦୀପ ତ୍ରୁଟିପୂର୍ଣ୍ଣ ହେଲା । ସେମାନେ ଏହାକୁ ପସନ୍ଦ କଲେନି । କାରଣ ଏହାକୁ ଖଣିରେ ବ୍ୟବହାର କଲେ ବିସ୍ଫୋରଣ ବିପଦ କିଛି ମାତ୍ରାରେ ଥିଲା । ଡେଭିଙ୍କ ଛାତ୍ର ଫାରାଡେଙ୍କୁ ଏହି ପ୍ରଦୀପ ସମ୍ପର୍କରେ ଯେତେବେଳେ ପଚରାଗଲା, ଫାରାଡେ ମଧ୍ୟ ଏହାର ବିପଦ କଥା ଜାଣିଥିଲେ । ତେଣୁ ସେ ମଧ୍ୟ ଏହାକୁ ଏକ ନିରାପଦ

ପ୍ରଦୀପ ବୋଲି ମତ ଦେଲେନି । କଥିତ ଅଛି ଡେଭି ଏହା ଶୁଣି ପାରି ଫାରାଡେଙ୍କ ଉପରକୁ ଖୁବ୍ ରାଗିଲେ । ସେତେବେଳେ ଡେଭି ଇଂଲଣ୍ଡର ରୟେଲ ସୋସାଇଟିର ସଭାପତି ଥାଆନ୍ତି । ଫାରାଡେ ଯେତେବେଳେ ରୟେଲ ସୋସାଇଟିର ଫେଲୋ ଭାବରେ ମନୋନୀତ ହେଲେ, ସେ ତାହା କରାଇ ଦେଲେନି । ଫଳରେ ଫାରାଡେ ରୟେଲ ସୋସାଇଟିର ଫେଲୋ ହୋଇ ପାରିଲେନି । ପରେ ଡେଭି ନାନାପ୍ରକାର ପ୍ରଭାବ ପକାଇ ତାଙ୍କ ନିରାପଦ ପ୍ରଦୀପକୁ ମନୋନୀତ କରାଇନେଲେ ।

ମନୋନୀତ କରାଇନେଲେ ସିନା, କିନ୍ତୁ ଉତ୍ତର-ଇଂଲଣ୍ଡର ଖଣି-ଶ୍ରମିକମାନେ ଏହାକୁ ମୋଟେ ଗ୍ରହଣ କଲେନି । ଓଲଟି ସେମାନେ ଜ୍ୟୋଡି ନାମକ ଏକ ନିରାପଦ ପ୍ରଦୀପକୁ ଖଣିରେ ବ୍ୟବହାର କଲେ, କାରଣ ଏହା ଖୁବ୍ ନିରାପଦ । ଏହାର ଉଦ୍ଭାବକ ହେଉଛନ୍ତି ଜର୍ଜ ଷ୍ଟିଭେନସନ । ସେ ଜଣେ ବଡ଼ ଖ୍ୟାତନାମା ଇଞ୍ଜିନିୟର, ବାଷ୍ପୀୟ ଶକଟର ଉଦ୍ଭାବକ ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଏହା ଫଳରେ ଡେଭି ଓ ଷ୍ଟିଭେନ୍‌ସନ୍‌ଙ୍କ ଉଦ୍ଭାବନ ଭିତରେ ଝଗଡ଼ା ଲାଗିଲା । ପରିଶେଷରେ ଡେଭି ଷ୍ଟିଭେନ୍‌ସନ୍‌ଙ୍କ ପ୍ରଦୀପର କେତେକ ଭଲ ଅଂଶ ନେଇ ନିଜ ପ୍ରଦୀପରେ ଲଗାଇ ଏକ ନୂଆ ପ୍ରଦୀପ ତିଆରି କଲେ । ଏହା କମିଟି ଦ୍ୱାରା ମନୋନୀତ ହେଲା । ସେହିଦିନଠାରୁ ଡେଭିଙ୍କ ପ୍ରଦୀପର ବ୍ୟବହାର ହୋଇ ଆସୁଛି । ଏଥିରେ ଜର୍ଜ ଷ୍ଟିଭେନସନଙ୍କ କୃତ କେତୋଟି ଅଂଶ ରହିଛି ।

ଏହି ଘଟଣାର ତିନି ବର୍ଷ ପରେ ୧୮୮୮ ମସିହାରେ ନିଉକାସଲ୍ ସ୍ଥିତ ଖଣିର ଶ୍ରମିକମାନେ ନିରାପଦ ପ୍ରଦୀପ ପାଇଁ

ଜର୍ଜ ଷ୍ଟିଭେନସନଙ୍କୁ ୧୦୦୦ ପାଉଣ୍ଡ ଅର୍ଥଦାନ କରି ତାଙ୍କ ଉଦ୍ଭାବନର ବଶିଷ୍ଟତା ଅନୁମୋଦନ କରିବା ସଙ୍ଗେ ସଙ୍ଗେ ତାଙ୍କୁ ସମ୍ମାନିତ କରିଥିଲେ ।

## ପାଞ୍ଚ

୧୯୩୩ ମସିହାରେ ନାଜୀନେତା ହିଟଲର ଯେତେବେଳେ ଜର୍ମାନୀର ସର୍ବମୟ କର୍ତ୍ତା ହେଲେ, ସେତେବେଳେ ଜର୍ମାନୀର ବଶିଷ୍ଟ ବୈଜ୍ଞାନିକ ଆଇନଷ୍ଟାଇନ ଆମେରିକା ଯୁକ୍ତରାଷ୍ଟ୍ର ପରିଭ୍ରମଣ କରୁଥିଲେ । ଆଇନଷ୍ଟାଇନ ଇହୁଦୀ ଥିଲେ ଓ ହିଟଲର ଇହୁଦୀମାନଙ୍କୁ ଅତ୍ୟଧିକ ଘୃଣା କରୁଥିଲେ । ତେଣୁ ଆଇନଷ୍ଟାଇନ ଆଉ ନିଜ ଦେଶ ଜର୍ମାନୀକୁ ଫେରିବାକୁ ମନ କଲେନି । ସେ ମଧ୍ୟ ବକ୍ତୃତା ପ୍ରସଙ୍ଗରେ ଏହାକୁ କେଉଁଠି କେଉଁଠି ପ୍ରକାଶ କରି ଦେଇଥିଲେ । ଜର୍ମାନୀର ଖବରକାଗଜ ଏହି ଖବର ପାଇ ତାଙ୍କ ଦେଶରେ ପ୍ରଚାର କଲେ ଯେ ଆଇନଷ୍ଟାଇନ ଆଉ ଜର୍ମାନୀକୁ ଫେରିବେନି । ହିଟଲର ଏହି ଖବର ପଢ଼ି ଅତ୍ୟନ୍ତ କ୍ରୁଦ୍ଧ ହୋଇ ତାଙ୍କ ଘରଦ୍ୱାର ସବୁ ଦଖଲ କରିନେଲେ । ବ୍ୟାଙ୍କରେ ତାଙ୍କର ଯାହା ଟଙ୍କା ଥିଲା, ସବୁ ବାଜ୍ୟାପ୍ତ କରିନେଲେ । ଗୋଟିଏ ପୁରସ୍କାର ଘୋଷଣା କଲେ, ଯିଏ ଆଇନଷ୍ଟାଇନଙ୍କ ମୁଣ୍ଡ ଜୀବିତ ବା ମୃତ ଅବସ୍ଥାରେ ତାଙ୍କୁ ଆଣି ଦେବ, ସେ ତାଙ୍କୁ ଏକହଜାର ପାଉଣ୍ଡ ପୁରସ୍କାର ଦେବେ । ଆଇନଷ୍ଟାଇନଙ୍କୁ ଯେତେବେଳେ ଏକଥା କୁହାଗଲା, ସେ କହିଲେ—"ଆଁ ! ମୁଁ ତ ଜାଣିନି, ମୋ ମୁଣ୍ଡର ମୂଲ୍ୟ କ'ଣ ଏତେ ?"

## ଛଅ

ଜେମ୍‌ସ ପ୍ରାଇସ୍ ହେଉଛନ୍ତି ଇଂଲଣ୍ଡର ସର୍ବଶେଷ ଆଲକେମିଷ୍ଟ । ରସାୟନବିଜ୍ଞାନ ଆରମ୍ଭ ପୂର୍ବରୁ ଆଲକେମୀ ଏକ ବିଜ୍ଞାନ ଭାବରେ ଏହାର ସ୍ଥାନ ଦଖଲ କରିଥିଲା । ଇଂଲଣ୍ଡ, ଫ୍ରାନ୍‌ସ, ଜର୍ମାନୀ ଆଦି ଦେଶରେ ବହୁ ଆଲକେମିଷ୍ଟ ରସାୟନ-ବିଜ୍ଞାନ ଉପରେ ଗବେଷଣା କରୁଥିଲେ । ସେମାନଙ୍କ ଗବେଷଣାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ନାନାପ୍ରକାର ରସାୟନକୁ ମିଶାଇ ଅମୃତ ବାହାର କରିବେ, ଯାହାକୁ ଖାଇଲେ ମଣିଷ ମରିବନି । ମଣିଷ ଅମର ହୋଇଯିବ । ତା'ଛଡ଼ା ସେମାନେ ଏମିତି ଏକ ପଦାର୍ଥ ଉଦ୍ଭାବନ କରିବେ, ଯେଉଁ ପଦାର୍ଥ ତମ୍ବା, ଲୁହା, ଦସ୍ତା ଆଦି ଧାତୁକୁ ଛୁଇଁଦେଲେ ସେସବୁ ଧାତୁ ସୁନା ପାଲଟିଯିବ । ଆଲକେମିଷ୍ଟ ପ୍ରାଇସ ୧୭୫୨ରୁ ୧୭୮୩ ମସିହା ପର୍ଯ୍ୟନ୍ତ ମାତ୍ର ୩୧ ବର୍ଷ ଜୀବିତ ଥିଲେ । ପ୍ରାଇସ୍‌ଙ୍କର ଏକ ଉନ୍ନତ ଧରଣର ଗବେଷଣାଗାର ଥିଲା । ସେଠାରେ ସେ ଲୁହା, ତମ୍ବା ଆଦି ଧାତୁକୁ ସୁନାରେ ପରିଣତ କରିବା ପାଇଁ ଗବେଷଣା ଚଳାଇଥିଲେ । ଶୁଣାଯାଏ, ପ୍ରାଇସ୍ ଲୁହାକୁ ସୁନାରେ ପରିଣତ କରିପାରିଥିଲେ ଓ ଏହାକୁ ତତ୍କାଳୀନ ଇଂଲଣ୍ଡର ବହୁ ବଡ଼ ବଡ଼ ବୈଜ୍ଞାନିକ ଓ ରସାୟନବିତ୍ ଦେଖି-ଛନ୍ତି । ଲୁହାରୁ ପ୍ରସ୍ତୁତ କରିଥିବା ସୁନାକୁ ସେକାଳର ଇଂରେଜ ସମ୍ରାଟ ତୃତୀୟ ଜର୍ଜଙ୍କୁ ସେ ଉପହାର ଦେଇଥିଲେ । ସେକାଳର ବଡ଼ ବଡ଼ ବୈଜ୍ଞାନିକ ଓ ବିଶିଷ୍ଟ ଲୋକଙ୍କ ସାକ୍ଷ୍ୟ ଉପରେ ତାଙ୍କୁ ଇଂଲଣ୍ଡର ସବୁଠାରୁ ବଡ଼ ବୈଜ୍ଞାନିକ ସଂସ୍ଥା ରୟେଲ ସୋସାଇଟିର ସଭ୍ୟ କରାହୋଇଥିଲା । ସେ ସଭ୍ୟ ସିନା ହେଲେ, କଥା ଥିଲା ଅନ୍ୟ ମେମ୍ବରମାନଙ୍କ ସାମନାରେ ନିଜେ ପରୀକ୍ଷା କରି ଦେଖାଇଦେବେ,

ଲୁହା କେମିତି ସୁନା ପାଲଟିଯାଉଛି । ଏହି ପରୀକ୍ଷା ପାଇଁ ତାରିଖ ଧାର୍ଯ୍ୟ ହେଲା । ନାନା ଆଳ ଦେଖାଇ ସେ ନିର୍ଦ୍ଧାରିତ ତାରିଖମାନଙ୍କରେ ପରୀକ୍ଷା ଦେଖାଇବାକୁ ଆସିଲେ ନାହିଁ । ଇଂଲଣ୍ଡର ପ୍ରସିଦ୍ଧ ବୈଜ୍ଞାନିକ ସାର ଯୋସେଫ ବେଙ୍କ ତାଙ୍କୁ ଦିନେ ପରୀକ୍ଷା କରି ଦେଖାଇବାକୁ ବାଧ୍ୟ କଲେ । ସେଦିନ ବହୁ ଲୋକ ଏହି ପରୀକ୍ଷା ଦେଖିବା ପାଇଁ ଏକତ୍ରିତ ହୋଇଥିଲେ । ପରୀକ୍ଷା ଦେଖାହେବା ହଲର ଏକ ପାର୍ଶ୍ୱ ରୁମରେ ତାଙ୍କୁ ତତ୍ସମ୍ବନ୍ଧୀୟ ନାନା ପରୀକ୍ଷା କରିବାକୁ ସୁବିଧା ଦିଆଗଲା । ତାଙ୍କ କାର୍ଯ୍ୟକୁ ତିନିଜଣ ବଡ଼ବଡ଼ ବୈଜ୍ଞାନିକ ତଦାରଖ କରୁଥିଲେ । ସେ ପ୍ରଥମେ ସେଠି କିଛି ଅତି ବିଷାକ୍ତ ପ୍ରୁସାଇକ ଅମ୍ଳ ଅସ୍ତୁତ କଲେ । ତତ୍ପରେ ସେ ଗୋଟିଏ ଉଇଲ ଲେଖି ସେଥିରେ ଦସ୍ତଖତ କଲେ । ଏହାପରେ ସେ ହଜାର ହଜାର ଦର୍ଶକ ଅପେକ୍ଷା କରିଥିବା ହଲକୁ ଆସିଲେ । ହାତରେ ଗୋଟିଏ ଗିଲାସ ପ୍ରୁସାଇକ ଅମ୍ଳ ଧରିଥିଲେ । ସମସ୍ତ ଦର୍ଶକଙ୍କୁ ହସିହସି ଅଭିବାଦନ ଜଣାଇଲେ । ଦର୍ଶକମାନେ ଖୁବ୍ ଖୁସି ଯେ ପ୍ରାଇସ ସେମାନଙ୍କୁ ଲୁହା କେମିତି ସୁନା ହୋଇଯିବ ଦେଖାଇବେ । ପ୍ରାଇସ ହସି ହସି ନାଟକୀୟ ଭଙ୍ଗୀରେ ସେହି ପ୍ରୁସାଇକ ଅମ୍ଳକୁ ଢକ୍ ଢକ୍ କରି ସମସ୍ତଙ୍କ ଆଗରେ ପିଇଦେଲେ । ସଙ୍ଗେ ସଙ୍ଗେ ସେ ତଳେ ପଡ଼ିଗଲେ । ସମସ୍ତଙ୍କ ସାମନାରେ ତାଙ୍କ ପ୍ରାଣବାୟୁ ଉଡ଼ିଗଲା ।

## ହାତ

ଚାର୍ଲସ ଡାରଉଇନ ପୃଥିବୀପ୍ରସିଦ୍ଧ ବିବର୍ତ୍ତନବାଦ ତଥ୍ୟ ପ୍ରଦାନ କରିସାରିଲା ପରେ ସେ ଏହି ତଥ୍ୟ ସମ୍ବନ୍ଧରେ ନିଶ୍ଚିତ

ନ ଥିଲେ । ତାଙ୍କର ଧାରଣା ଥିଲା, ତାଙ୍କର ତଥ୍ୟକୁ କେହି ବିଶ୍ୱାସ କରିବେନି କି ଗ୍ରହଣ କରିବେନି । ଏହି ସମୟରେ ଇଂଲଣ୍ଡର ଜଣେ ବଡ଼ ପ୍ରକାଶକ ତାଙ୍କୁ ଏହି ତଥ୍ୟ ଉପରେ ଏକ ବହି ଲେଖିବା ପାଇଁ ଜିଦ କଲେ ଓ ଏଥିପାଇଁ ମୋଟା ପାରିଶ୍ରମିକ ଦେବାକୁ ଅଙ୍ଗୀକାର କରିଥିଲେ । ଡାରଉଇନ ବହିଟି ଲେଖିଲେ । ବହିଟି ଛପା ହେବା ପାଇଁ ପ୍ରେସକୁ ଗଲା । ସେତେବେଳ ପର୍ଯ୍ୟନ୍ତ ତାଙ୍କର ସନ୍ଦେହ ଥିଲା ଯେ ଏହି ବହିଟି ମୋଟେ ବିକ୍ରୀ ହେବ ନାହିଁ । ଯେଉଁ ତଥ୍ୟକୁ କେହି ବିଶ୍ୱାସ କରିବେ ନାହିଁ, ସେହି ତଥ୍ୟ ଥିବା ବହିକୁ କିଏ କାହିଁକି କିଣିବ ? ସେ ବହି ସମ୍ପର୍କରେ ଏତେ ସନ୍ଦିହାନ ଥିଲେ ଯେ ବହିଟି ଛପାହୋଇ ବାହାରି ହେଉଥିଲାବେଳେ ବହିର ପ୍ରକାଶକଙ୍କ ପାଖକୁ ଦିନେ ଚିଠି ଲେଖିଲେ, "ଆପଣଙ୍କର ବହି ଯଦି ଭଲ ବିକ୍ରୀ ନ ହୁଏ, ତେବେ ଆପଣ ମୋତେ ପାରିଶ୍ରମିକ ନ ଦେଇ ପାରନ୍ତି ।"

ବହିଟି ପ୍ରକାଶିତ ହେଲାପରେ ଏହା ଏତେ ବିକ୍ରୀ ହେଲା ଯେ ଡାରଉଇନ ଧାରଣା କରିପାରି ନଥିଲେ ।

## ଆଠ

ଦିନେ ଆମେରିକାର ପ୍ରସିଦ୍ଧ ପଦାର୍ଥବିଜ୍ଞାନବିତ୍ ନୋବେଲ ପୁରସ୍କାର ବିଜେତା ରବର୍ଟ ମିଲିକାନଙ୍କ ଘରେ ଫୋନ ବାଜି ଉଠିଲା । ଅନ୍ୟ କୋଠରୀରେ ମିଲିକାନଙ୍କ ସ୍ତ୍ରୀ ଥିଲେ । ସେ ଫୋନଠାକୁ ଦୌଡ଼ି ଆସିଲେ । ସେତେବେଳକୁ ଘରର ଆୟା ଫୋନ୍ ଧରି ଉତ୍ତର ଦେଉଥାନ୍ତି । ଆୟା ଫୋନରେ କହୁଥିବାର ମିସେସ ମିଲିକାନ ଶୁଣିଲେ, 'ହଁ ଆଜ୍ଞା, ଏ ହେଉଛି ଡାକ୍ତର

ମିଲିକାନଙ୍କ ବାସଭବନ । କିନ୍ତୁ ସେ କାହାର କିଛି ଉପକାର କରିଭଲିଆ ଡାକ୍ତର ନୁହଁନ୍ତି, ସେ ଏମିତି ଏକ ଫାଲତୁ ଡାକ୍ତର ।"

## ନଅ

ଥମାସ୍ ଆଲ୍‌ଭା ଏଡିସନ ଆମେରିକାର ଏକ ପ୍ରସିଦ୍ଧ ଉଦ୍ଭାବକ । ଇଲେକ୍‌ଟ୍ରିକ ବଲ୍‌ବଠାରୁ ଆରମ୍ଭକରି ଗ୍ରାମୋଫୋନ, ଚଳଚ୍ଚିତ୍ର ପର୍ଯ୍ୟନ୍ତ ସେ କେତେ କ'ଣ ଯେ ନୂଆ ନୂଆ କଥା ଉଦ୍ଭାବନ କରିଛନ୍ତି, ତା'ର କଳନା ନାହିଁ । ଏଡିସନ ସର୍ବଦା ନିଜ ଗବେଷଣାଗାର ଭିତରେ ଆବଦ୍ଧ ରହିବାକୁ ଭଲ ପାଉଥିଲେ । ସବୁବେଳେ ନୂଆ ନୂଆ ଉଦ୍‌ଭାବନ ସମ୍ପର୍କରେ ଚିନ୍ତା । ସାଧାରଣ ସାମାଜିକ ମିଳାମିଶା ପ୍ରତି ସେତେ ଆଗ୍ରହ ଦେଖାଉ ନଥିଲେ । କେହି ନିମନ୍ତ୍ରଣ କଲେ କାହା ଘରକୁ ଭୋଜିଭାତ ଖାଇବାକୁ ଯିବାକୁ ଭଲପାଉ ନଥିଲେ । ଆମେରିକାର ଏକ ପ୍ରସିଦ୍ଧ ବୈଜ୍ଞାନିକ ଥିବାରୁ ବହୁ ଲୋକ ତାଙ୍କୁ ନାନା କାମକାର୍ଯ୍ୟରେ ନିମନ୍ତ୍ରଣ କରନ୍ତି । ସେ ବାଧ୍ୟବାଧକତା ନ ହେଲେ ନିମନ୍ତ୍ରଣ ରକ୍ଷାକରି କେଉଁଠାକୁ ଯାଆନ୍ତିନି । ଥରେ ଗୋଟିଏ ବିଭାଘରରେ ସେ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ବହୁ ଲୋକଙ୍କ ଏକତ୍ର ସମାବେଶ, କିଏ କାହା ସହିତ ଦେଖାସାକ୍ଷାତ କଥାବାର୍ତ୍ତା କରିବାରେ ବ୍ୟସ୍ତ । ଏଡିସନଙ୍କୁ କିନ୍ତୁ କିଛି ଭଲ ଲାଗୁ ନ ଥାଏ । ସେ କାହା ସହିତ ମନଖୋଲି କଥାବାର୍ତ୍ତା କରିପାରୁ ନଥାନ୍ତି । କ'ଣ ବା କଥାବାର୍ତ୍ତା କରିବେ ? ସବୁବେଳେତ ବିଜ୍ଞାନଚିନ୍ତା ମନ ଭିତରେ ଉଙ୍କି ମାରୁଛି । ଏଡିସନ ଦେଖିଲେ, ତାଙ୍କୁ କିଛି ଭଲ ଲାଗୁନି । ଭାବିଲେ ଏଠୁ ପଳାଇଯିବେ । ବାଟ ଖୋଜିଲେ କେମିତି ଯିବେ ? ଦେଖିଲେ

ଦାଣ୍ଡଦୁଆର କବାଟ ପାଖରେ ବେଶି ଗହଳ ନାହିଁ । ସେହିବାଟେ ପଳାୟନ କଲେ ଭଲ ହେବ । ସେ ଖସି ପଳାଇବା ଉଦ୍ଦେଶ୍ୟରେ ଆସି ଦାଣ୍ଡ ଦୁଆର ପାଖରେ ପହଞ୍ଚିଲାବେଳକୁ ଘରର ମାଲିକ ତଥା ଅତିଥି-ସତ୍କାରକ ତାଙ୍କୁ ଭେଟି ଉଚ୍ଚସ୍ୱରରେ କହିଲେ, "ଏହି ଯେ ଆମ ଦେଶର ପ୍ରସିଦ୍ଧ ବୈଜ୍ଞାନିକ ଏଡ଼ିସନ୍ । ଆମର ବଡ଼ ଭାଗ୍ୟ ଯେ ମହାଶୟଙ୍କ ପାଦ ଆଜି ଆମ ଘରେ ପଡ଼ିଲା । ମହାଶୟ, ବର୍ତ୍ତମାନ କେଉଁ ବିଷୟ ଉପରେ ଗବେଷଣା ଚଳାଇଛନ୍ତି ?"

ଏଡିସନ ଉତ୍ତର ଦେଲେ, "ନାଇଁ ଆଜ୍ଞା, ଆଉ କାହା ଉପରେ ଗବେଷଣା କରିବି ? ଆତ୍ମ-ବହିଷ୍କରଣ ଉପରେ ବର୍ତ୍ତମାନ ମୋ ଗବେଷଣା ସୀମିତ ।"

## ଦଶ

ହେନେରି ମୋଜ୍‌ଲେ ଖୁବ୍ ଅଳ୍ପ ବର୍ଷ ବଞ୍ଚିଥିଲେ କ'ଣ ହେବ ସେ ଇଂଲଣ୍ଡର ବିଶିଷ୍ଟ ବୈଜ୍ଞାନିକ ସାର ରଥରଫୋର୍ଡ଼୍‌ଙ୍କ ଏକ ଦକ୍ଷ ସହକାରୀ । ସେ ମଧ୍ୟ ମୌଳିକ ବସ୍ତୁ ଉପରେ ରଞ୍ଜନରଶ୍ମି ପ୍ରୟୋଗ କରି ପରମାଣୁ କ୍ରମାଙ୍କ ଆବିଷ୍କାର କରିଥିଲେ । ଅଳ୍ପଦିନ ବଞ୍ଚିଥିଲେ କ'ଣ ହେବ, ଏକ ଦକ୍ଷ ବୈଜ୍ଞାନିକ ଭାବରେ ସେ ପରିଚିତ । ସେ ଭଲ ଅଭିନୟ କରିପାରନ୍ତି । ସେ ତାଙ୍କ ଗବେଷଣାଗାରରେ କାର୍ଯ୍ୟରତ ଥିଲାବେଳେ ବହୁ ଲୋକ ତାଙ୍କ ଠାକୁ ଆସି ତାଙ୍କଠାରୁ ଦିଆସିଲି ମାଗିନିଅନ୍ତି, ଫେରନ୍ତିନି । ବେଳେବେଳେ କାମ କଲାବେଳେ ଦିଆସିଲି ଦରକାର ହେଲେ ସେ ଦିଆସିଲି ପାଆନ୍ତିନି । ଦିଆସିଲି କିଏ ମାଗିନେଇଛି, ମନେ

ନଥାଏ । ଏହିଭଳି ଖବରେ ପରୀକ୍ଷାବେଳେ ବାଇଗଣ ଦେବାରୁ ସେ ଦିନେ କ'ଣ କଲେନା, ବଜାରକୁ ଯାଇ ଗୋଟିଏ ବାଆସିଲ ବଣ୍ଡିଲ କିଣି ଆଣିଲେ । ସେହି ବଣ୍ଡିଲଟିକୁ ଗବେଷଣାଗାରର ଏକ କୋଣରେ ରଖି ତା' ଉପରେ ଲେଖିଦେଲେ, "ଯେଉଁମାନଙ୍କର ବାଆସିଲ ଦରକାର, ସେମାନେ ଏଠାରୁ ନଅନ୍ତୁ, ଦୟାକରି ମୋ ବାଆସିଲ ମାଗି ନେଇ ଯାଆନ୍ତୁନି ।"



# ଷଷ୍ଠ ଅଧ୍ୟାୟ

## ଏକ

ସୁଇଡେନ ରାଜ୍ୟର ଉଦ୍‌ଭିଦ-ବିଜ୍ଞାନବିତ୍ ଲିନେୟୁସ ପୃଥିବୀର ଉଦ୍‌ଭିଦ ଜଗତକୁ ଶ୍ରେଣୀବିଭାଗ କରି ବିଭିନ୍ନ ଉଦ୍‌ଭିଦର ନାମକରଣ କରିଥିଲେ । ତାଙ୍କ କାମ ବିଜ୍ଞାନ-ଜଗତରେ ଏକ ବିରାଟ କାମ ବୋଲି ଧରାଯାଏ । ପୃଥିବୀରେ ଏମିତି ଗଛ ନାହିଁ, ଯାହାକୁ ଲିନେୟୁସ ଚିହ୍ନି ନ ଥିଲେ ବା ତା'ର ନାମକରଣ କରି ନଥିଲେ ।

ଥରେ ଲିନେୟୁସ ପ୍ୟାରିସ ଆସିଥିଲେ । ସେ ଶୁଣିବାକୁ ପାଇଲେ ଯେ ଫ୍ରାନ୍‌ସର ବିଶିଷ୍ଟ ଉଦ୍‌ଭିଦ ବିଜ୍ଞାନବିତ୍ ଅଧ୍ୟାପକ ବାରନାର୍ଡ଼ 'ଦୁଷ୍ପ୍ରାପ୍ୟ ଉଦ୍ଭିଦ' ଉପରେ ଏକ ବକ୍ତୃତା ଦେଉଛନ୍ତି । ଲିନେୟୁସ ସେହି ବକ୍ତୃତା ଶୁଣିବାକୁ ଗଲେ । ସେ ଭାଷଣ ଦେଉଁ ଦେଉଁ ବିଭିନ୍ନ ଦୁଷ୍ପ୍ରାପ୍ୟ ଉଦ୍ଭିଦକୁ ମଧ୍ୟ ଦେଖାଉଥାନ୍ତି ଓ ଚିହ୍ନାଉଥାନ୍ତି ।

ଦେଖାଉଁ ଦେଖାଉଁ ସେ ହଠାତ୍ ଏମିତି ଗୋଟିଏ ଉଦ୍ଭିଦ ଦେଖାଇଲେ ଯାହାକୁ ସେ ଚିହ୍ନି ନାହାନ୍ତି କି ତାର ନାମ ମଧ୍ୟ ଜାଣନ୍ତିନି । ବଡ଼ ଅସୁବିଧାରେ ପଡ଼ିଲେ ଅଧ୍ୟାପକ, ଉଦ୍ଭିଦଟିକୁ

ଧରି ଏହାର କ'ଣ ନାମ ହେବ ପଚାରୁଛନ୍ତି, ଦର୍ଶକମଣ୍ଡଳୀ ଭିତରୁ ଲିନେୟୁସ ଠିଆହୋଇ ଉଦ୍ଭିଦର ନାଁଟା କହିଦେଲେ ।

ଉଦ୍ଭିଦର ନାଁଟା ଜଣେ ଶ୍ରୋତା କହିଦେବା ଶୁଣି ଅଧ୍ୟାପକ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଯାଇ କହିପକାଇଲେ, "ଆପଣ କ'ଣ ଲିନେୟୁସ କି ?"

ଶ୍ରୋତାଜଣକ କହିଲେ, 'ଆଜ୍ଞା, ହଁ ।'

ଅଧ୍ୟାପକ ଆଉ ଭାଷଣ ଦେବେ କ'ଣ, ଦୌଡ଼ି ଆସି ତାଙ୍କୁ କୁଣ୍ଢାଇ ପକାଇଲେ ।

## ଦୁଇ

ପୃଥିବୀ-ପ୍ରସିଦ୍ଧ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନ ନିଜ ପୋଷାକପତ୍ର ଚେହେରା ବିଷୟରେ ବିଶେଷ ଧ୍ୟାନ ଦେଉନଥିଲେ । ବେଳେବେଳେ ମଇଳା, କୁଞ୍ଚାମୁଞ୍ଚା ପୋଷାକ ପିନ୍ଧି ବାହାରକୁ ବାହାରି ପଡ଼ୁଥିଲେ । ଥରେ ସେ ସୁଇଜରଲଣ୍ଡର ବାସଲ ସହରରେ ଏକ ବୈଜ୍ଞାନିକ କନ୍‌ଫରେନ୍‌ସରେ ଯୋଗ ଦେବାପାଇଁ ଯାଇଥାନ୍ତି । ସେଠାରେ ରହିବା ପାଇଁ ଗୋଟିଏ ହୋଟେଲରେ ପହଞ୍ଚିଲେ । ହୋଟେଲଟି ଧନୀ ଲୋକମାନେ ରହିଲାଭଳି ହୋଟେଲ । ସେହି ହୋଟେଲରେ ତାଙ୍କ ପାଇଁ ସିଟ୍ ରିଜର୍ଭ ହୋଇଥିଲା । ତାଙ୍କ ଚେହେରା, ତାଙ୍କ ମଇଳା ପୋଷାକ ଦେଖି ହୋଟେଲ ଦରୁଆନ ପ୍ରଥମେ ଭିତରକୁ ଛାଡ଼ିଲା ନାହିଁ । ମେନେଜର ମେହିବାଟେ ଯାଉ ଥାଉ ଯେତେବେଳେ ତାଙ୍କୁ ଦେଖିଲେ ଘୃଣାରେ କହିଲେ "ଏ ହୋଟେଲରେ ଜାଗା ନାହିଁ, ଅନ୍ୟତ୍ର ଦେଖ ।"

ଆଉ ଥରେ ପୋଲାଣ୍ଡ ରାଜ୍ୟର ପ୍ରେଗ୍ ସହରର ଏକ ହୋଟେଲରେ ପହଞ୍ଚିଲାକ୍ଷଣି ହୋଟେଲ ଦରୁଆନ ଭାବିଲା ସେ ଜଣେ ଇଲେକ୍‌ଟ୍ରିକ ମିସ୍ତ୍ରୀ । ହୋଟେଲରେ କ'ଣ କିଛି ସଜାଡ଼ିବା ପାଇଁ ଆସିଛି । ତେଣୁ ସେ ତାଙ୍କୁ ଏକ ଭାଙ୍ଗିଯାଇଥିବା ବିଦ୍ୟୁତ୍ ପଙ୍ଖା ଥିବା ଘରକୁ ନେଇଯାଇ କାମ ଦେଖାଇ ଦେଇଥିଲା ।

## ତିନି

କ୍ୱାଣ୍ଟମ ପଦାର୍ଥ ବିଜ୍ଞାନର ଏକ ପ୍ରଧାନ ପ୍ରତିଷ୍ଠାତା ଗଣିତଜ୍ଞ ହିଲବର୍ଟ ଅତ୍ୟଧିକ ଅନ୍ୟମନସ୍କ ଥିଲେ । ସେ ଗୋଟିଏ କାମ କରନ୍ତି, ଅନ୍ୟ କଥା ଭାବନ୍ତି, ଜାଣନ୍ତିନି କି କାମ କରୁଛନ୍ତି । ତାଙ୍କର ଜଣେ ବଡ଼ ବନ୍ଧୁ ହେଉଛନ୍ତି ପଦାର୍ଥବିଜ୍ଞାନବିତ୍ ଜେମ୍‌ସ୍ ଫ୍ରାଙ୍କ । ସେ ଦିନେ ବାଟରେ ଯାଉ ଯାଉ ତାଙ୍କ ବନ୍ଧୁ ଜେମ୍‌ସ ଫ୍ରାଙ୍କଙ୍କୁ ଦେଖିଲେ । ହଠାତ୍ ଚାଲିବା ବନ୍ଦ କରିଦେଇ ଡାକିଲେ, "ଜେମ୍‌ସ, ଶୁଣ ଶୁଣ ।"

ଜେମ୍‌ସ ପାଖକୁ ଆସିଲାରୁ ପଚାରିଲେ— "ତୁମ ସ୍ତ୍ରୀ କ'ଣ ମୋ ସ୍ତ୍ରୀ ଭଳି ଶ୍ରେଷ୍ଠ ଲୋକ ?"

ଜେମ୍‌ସ କିଛି ବୁଝି ନପାରି ପଚାରିଲେ, "କାହିଁକି କ'ଣ ହେଲାକି ? ଏମିତି କ'ଣ ପଚାରୁଛ ? ତୁମ ସ୍ତ୍ରୀ କ'ଣ କଲେ କି ?"

"ହଇହେ, ମୁଁ ଆଜି ସକାଳେ ଜାଣିଲି । ମୋ ସ୍ତ୍ରୀ ମୋତେ ଜଳଖିଆରେ ଅଣ୍ଡା ଖାଇବାକୁ ଦେଉନି । ଭଗବାନଙ୍କୁ ଜଣା, ସେ ଏମିତି କେତେଦିନ ହେଲା ମୋତେ ଅଣ୍ଡା ଦେଉନାହିଁ ।

## ଗ୍ଣ୍ଣର

ବେଶି ଦିନ ତଳର କଥା ନୁହେଁ ।

ସାର୍ ଆଶୁତୋଷ ମୁଖାର୍ଜି ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସାର୍ ଆଶୁତୋଷ ଖାଲି ଜଣେ ଶିକ୍ଷାବିତ୍ ନଥିଲେ; ସେ ମଧ୍ୟ ଥିଲେ ଜଣେ ବଡ଼ ଗଣିତଜ୍ଞ । ସେ କୁଳପତି ଥାଇ ବେଳେବେଳେ ବିଶ୍ୱବିଦ୍ୟାଳୟର ଗଣିତ ଏମ୍.ଏ. କ୍ଲାସରେ ପାଠ ପଢ଼ାଉଥିଲେ । ସେ ମଧ୍ୟ ବିଶ୍ୱବିଦ୍ୟାଳୟର ଏମ୍.ଏ. ପରୀକ୍ଷାରେ ପ୍ରଶ୍ନ ପକାଉଥିଲେ ଓ ଖାତା ମଧ୍ୟ ଦେଖୁଥିଲେ । ସେ ଥରେ ଏମ୍.ଏ. ଗଣିତ ପରୀକ୍ଷାରେ ବାଛିବାଛି ଏକ କଷ୍ଟ ପ୍ରଶ୍ନ ପକାଇଥିଲେ । ସେହି ପ୍ରଶ୍ନର ଉତ୍ତର କୌଣସି ପରୀକ୍ଷାର୍ଥୀ ଦେଇ ନଥିଲେ । ତହିଁ ପରବର୍ଷ ପୁଣି ସେ ସେହି ପ୍ରଶ୍ନଟିକୁ ପକାଇଲେ । ସେଥର ବି କୌଣସି ପିଲା ସେଥିର ଉତ୍ତର ଦେଲେନି । ତହିଁ ପରବର୍ଷ ପୁଣି ସେ ସେହି ପ୍ରଶ୍ନଟିକୁ ପକାଇଲେ । ସେଥର ବି କୌଣସି ପିଲା ଏହାର ଉତ୍ତର ଦେଲେନି । ସେ ଦିନେ ସେଥିପାଇଁ ବିଶ୍ୱବିଦ୍ୟାଳୟ ଅଧ୍ୟାପକମାନଙ୍କ ଆଗରେ କ୍ଷୋଭପ୍ରକାଶ କରି କହୁଥିଲେ ଯେ ପିଲାମାନେ ଆଜିକାଲି ମନଦେଇ ମୋଟେ ପଢ଼ୁନାହାନ୍ତି । କଷ୍ଟ ପ୍ରଶ୍ନ ଦେଖିଲେ ଛାଡ଼ି ଦେଉଛନ୍ତି, ଉତ୍ତର ପାଇଁ ଚେଷ୍ଟା ବି କରୁନାହାନ୍ତି । ତିନି ତିନି ବର୍ଷ ଧରି ସେ ଗୋଟିଏ ପ୍ରଶ୍ନର ପୁନରାବୃତ୍ତି କଲେ ମଧ୍ୟ ଜଣେ ହେଲେ ପିଲା ଚେଷ୍ଟା କଲେନି ।

ସେହି ସଭାରେ ଯୁବକ ଅଧ୍ୟାପକ ସତ୍ୟେନ୍ଦ୍ରନାଥ ବୋଷ ଥାଆନ୍ତି । କୁଳପତିଙ୍କ କଥାରେ ଅନ୍ୟ ବଡ଼ ବଡ଼ ଅଧ୍ୟାପକମାନେ

କିଛି ନ କହିବା ଦେଖି ସେ କହିଲେ—"ପିଲାମାନେ କେମିତି ଉତ୍ତର ଦିଅନ୍ତେ ଯେ ? ସେ ପ୍ରଶ୍ନଟାତ ମୂଳରୁ ଭୁଲ ।"

ଏହା ଶୁଣି ସାର୍ ଆଶୁତୋଷ ସାମାନ୍ୟ ବିରକ୍ତ ହୋଇ କହିଲେ—"ଏହାକୁ ତୁମେ ପରୀକ୍ଷା କରି ଦେଖିଛ, ନା ମନରୁ ବାଧ କହୁଛ ?

"ନା, ସାର୍, ମୁଁ ଓ ଗଣିତ ଅଧ୍ୟାପକ ଉଭୟେ କଷି ଦେଖିଛୁଁ ଯେ ପ୍ରଶ୍ନଟି ଭୁଲ ଅଛି ।"

ସାର୍ ଆଶୁତୋଷ ଏଥିରେ ରୋଷ କରିବେ କି କ'ଣ, ଅଧ୍ୟାପକମାନେ ମନେମନେ ଶଙ୍କିତ ହେଉଥାନ୍ତି । ସାର୍ ଆଶୁତୋଷ ରାଗିବା ପରିବର୍ତ୍ତେ ହସିଦେଇ ସତ୍ୟେନ୍ଦ୍ରନାଥଙ୍କୁ ଲକ୍ଷ୍ୟ କରି କହିଲେ—"ଅଶେଷ ଧନ୍ୟବାଦ ମିଷ୍ଟର ବୋଷ ! ତୁମେ ମୋ ଭୁଲ ଦେଖାଇ ପାରିଛ ।"

ଶୁଣାଯାଏ, ସାର ଆଶୁତୋଷ ଏଥିରେ ଏତେ ଖୁସି ହୋଇ ଯାଇଥିଲେ ଯେ ସତ୍ୟେନ୍ଦ୍ରନାଥଙ୍କୁ ଏକ ପ୍ରମୋସନ ଦେବାପାଇଁ ସୁପାରିଶ କରିଦେଇ ଯାଇଥିଲେ ।

## ପାଞ୍ଚ

ମାର୍କିନ ରକେଟ୍ ଇଞ୍ଜିନିଅର ରବର୍ଟ ହଚିଙ୍ଗସ ଗଡାର୍ଡ଼ ପ୍ରଥମ ମହାସମର ପରେ ଦିନେ ଏକ ସଭାରେ ପ୍ରକାଶ କଲେ ଯେ ଆଉ ଅଳ୍ପଦିନ ପରେ ପୃଥିବୀର ବୈଜ୍ଞାନିକମାନେ ଚନ୍ଦ୍ରଲୋକକୁ ମଣିଷ ନଥିବା ରକେଟ ପଠାଇବାକୁ ସମର୍ଥ ହେବେ । ସେହି

ସଭାରେ ଯେତେକ ଶ୍ରୋତା ଥିଲେ, ସମସ୍ତେ ଏ କଥାଟା ଅସମ୍ଭବ ଜାଣି ହସି ହସି ଗଡ଼ିଗଲେ । ଖବରକାଗଜବାଲାମାନେ ପତ୍ର ପତ୍ରିକାରେ ତାଙ୍କୁ ନାନାପ୍ରକାର ଥଟ୍ଟା କଲେ । ଅବସ୍ଥା ଏମିତି ହେଲା ଯେ ସେ ଲାଜରେ ପଦାକୁ ବାହାରି ପାରିଲେନି । ସେ ଏହି ଥଟ୍ଟାରେ ଏତେ ବ୍ୟଥିତ ହୋଇ ପଡ଼ିଥିଲେ ଯେ ୧୯୨୬ ମସିହାରେ ସେ ଯେତେବେଳେ ପ୍ରଥମ ରକେଟ ମହାକାଶକୁ ପ୍ରେରଣ କଲେ, ଏହାକୁ ଦେଖିବା ପାଇଁ ସେ କୌଣସି ଖବରକାଗଜବାଲାଙ୍କୁ ଡାକିପାରି ନଥିଲେ । ଗଡ଼ାର୍ଡ୍ ବୋଷ୍ଟନ ନିକଟସ୍ଥ ଏକ ଗ୍ରେଟକାଟିଆ ସହର ଓ୍ବୋର୍ଷ୍ଟରରେ ନିଜ ଗବେଷଣାଗାର ପ୍ରତିଷ୍ଠାକରି ରକେଟ ସମ୍ପର୍କୀୟ ଗବେଷଣା କରୁଥିଲେ । ତାଙ୍କ ଗବେଷଣାରେ ନାନାପ୍ରକାର ରକେଟ୍ ଆକାଶକୁ ଯାଇ ଫେରି ଆସୁଥିଲା । ଏହି ଫେରିବା ବେଳେ ପାଖ ପଡ଼ିଶାମାନେ ଏତେ ଭୟଭୀତ ହୋଇ ପଡ଼ୁଥିଲେ ଯେ ଗଡ଼ାର୍ଡ୍‌ଙ୍କୁ ସେହି ସହରରୁ କେମିତି ନିକାଳିବେ ସେହି ଥିଲା ସେମାନଙ୍କର ପ୍ରଧାନ ଚିନ୍ତା । ସେମାନଙ୍କ ଜୀବନ ଓ ଘରଦ୍ୱାର ପ୍ରତି ଏତେ ଭୟ ବଢ଼ିଗଲା ଯେ ସେମାନେ ଶେଷରେ ଗଡ଼ାର୍ଡ୍‌ଙ୍କ ନାଁରେ କୋର୍ଟରେ ମୋକଦ୍ଦମା କଲେ । ଏହି ମୋକଦ୍ଦମାରେ ସେମାନେ ଜିତିଲେ । ପରିଶେଷରେ ଗଡ଼ାର୍ଡ୍‌ଙ୍କୁ ସେହିସହରରୁ ବାହାରିଯିବାକୁ ପଡ଼ିଥିଲା । ଆଜିକାର ମହାକାଶ ଗବେଷଣାର ଯେ ଜନକ, ତାଙ୍କ ଅବସ୍ଥା ଦିନେ ଏମିତି ବି ହୋଇଥିଲା !

## ଛଅ

ବିବର୍ତ୍ତନବାଦର ଜନକ ଚାର୍ଲସ ଡାରଉଇନ୍ ତାଙ୍କ ତଥ୍ୟର ପ୍ରତିପାଦନ ନେଇ ସେ ଝିଅ, ଯାମୁକା, କଙ୍କଡ଼ା, ପୋହଳା,

ବାରନାକଲ୍ ଆଦି କେତେ ପ୍ରକାର ପ୍ରାଣୀ ନେଇ ଯେ ଗବେଷଣା କରିଥିଲେ, ତାର କଳନା ନାହିଁ । ଏହି ପ୍ରାଣୀଗୁଡ଼ିକ ଉପରେ ଅଧ୍ୟୟନ କରି ସେ ତାଙ୍କର ବିବର୍ତ୍ତନବାଦକୁ ପ୍ରତିପାଦନ କରିଥିଲେ । ସାମୁଦ୍ରିକ ପ୍ରାଣୀ ବାରନାକଲ ନେଇ ସେ ଯେଉଁ ଗବେଷଣା କରୁଥିଲେ, ତାହା ଖୁବ୍ ସୁଦୂରପ୍ରସାରୀ । ସେ ଯେତେବେଳେ ଏହା ଉପରେ ଗବେଷଣା ଆରମ୍ଭ କଲେ, ଭାବିଥିଲେ ଦୁଇମାସ ଭିତରେ ଗବେଷଣା ହୋଇଯିବ । ଦୁଇମାସ ଜାଗାରେ ତାଙ୍କୁ ଲାଗିଲା ଆଠବର୍ଷ । ସେ ଏହି ସମୟ ଭିତରେ ପ୍ରାୟ ୧୦,୦୦୦ ଜାତିର ବାରନାକଲ ସଂଗ୍ରହ କରିଥିଲେ । ଦକ୍ଷିଣ ଆମେରିକାର ଚିଲିଠାରୁ ଆରମ୍ଭ କରି ଉତ୍ତର ଇଉରୋପ ପର୍ଯ୍ୟନ୍ତ ସେ ସବୁଆଡ଼ୁ ବିଭିନ୍ନ ଜାତିର ପ୍ରାଣୀ ସଂଗ୍ରହ କରିଥିଲେ । ଏହି ପ୍ରାଣୀଗୁଡ଼ିକ ତାଙ୍କ ଘରେ ଏତେ ଆତଯାତ ହେଉଥିଲେ ଯେ ଯେଉଁଠି ଦେଖିବ ସେଠି ବାରନାକଲ ପାଇବ । ଘରେ, ଚଟାଣରେ, ଘର କୋଣରେ ଟେବୁଲ ଉପରେ, ଆଲମାରି ଭିତରେ, ସବୁଆଡ଼େ ଏମାନେ ଚଲବୁଲ କରୁଥିଲେ । ଡାରଉଇନ୍‌ଙ୍କ ପିଲମାନେ ଏଥିପ୍ରତି ଏତେ ଅଭ୍ୟସ୍ତ ହୋଇଯାଇଥିଲେ ଯେ ଏହି ପ୍ରାଣୀ ସେମାନଙ୍କ ଜୀବନପ୍ରବାହ, ଚଳଣି ସହିତ ସାମିଲ ହୋଇ ଯାଇଥିଲା । ସେମାନେ ଭାବୁଥିଲେ ଏହି ବାରନାକଲ ନଥିଲେ ସେମାନଙ୍କ ଘର କି ପରିବାର ନଥାନ୍ତା । ସମସ୍ତଙ୍କ ଘରେ ସମ୍ଭବତଃ ସେମାନେ ଥିବେ ବୋଲି ସେମାନଙ୍କ ଧାରଣା । ଥରେ ଡ଼ାରଉଇନଙ୍କ ପୁଅ ପଡ଼ିଶା ଘରକୁ ବୁଲିଯାଇଥିଲେ । ଦେଖିଲେ ସେଠି ବାରନାକଲମାନେ ନାହାନ୍ତି । ସେ କୌତୂହଳୀ ହୋଇ ତାଙ୍କ ସାଙ୍ଗକୁ ପଚାରିଲେ, "ତୁମ ବାପା ବାରନାକଲଗୁଡ଼ାକୁ କେଉଁଠି ରଖିଛନ୍ତି ? କାହିଁ ସେମାନେ ତ ବାହାରେ ବୁଲୁନାହାନ୍ତି ?"

## ସ୍ୱତ୍ତ

ଥରେ ଜଣେ ବୈଜ୍ଞାନିକ ଜମିଦାରଙ୍କଠାରୁ ଗୋଟିଏ ଜମି ପଟ୍ଟା ନେଇଥିଲେ । ପଟ୍ଟାରେ ଲେଖାଥିଲା—ଜମିରେ ଯଦି କୌଣସି ମୂଲ୍ୟବାନ ଧାତୁ ବାହାରେ, ତେବେ ସେଥିରେ ସେ ଭାଗୀଦାର ହେବେ । ଦିନେ ଦେଖିଲାରୁ ଗୋଟିଏ ବିରାଟ ଉଲକାପିଣ୍ଡ ତାଙ୍କ ଜମି ଉପରେ ପଡ଼ିଛି । ଉଲ୍‌କାପିଣ୍ଡକୁ ଦେଖି ବୈଜ୍ଞାନିକ ଜଣକ ଭାରି ଖୁସି ହୋଇଗଲେ । ଭାବିଲେ, ସେ ଏହାକୁ ନେଇ ପରୀକ୍ଷା କରିବେ । ଏଥିରେ ଯଦି କିଛି ମୂଲ୍ୟବାନ ଧାତୁ ଥାଏ, ତେବେ ସେ ତାହାର ମାଲିକ ହେବେ । କାରଣ ଏହା ତାଙ୍କ ଜମିରେ ପଡ଼ିଛି !

ଉଲ୍‌କାପିଣ୍ଡ ପଡ଼ିବା କଥା ଶୁଣି ଜମିଦାର ଆସି ସେଠି ହାଜର ହେଇଗଲେ । ଏହା ତାଙ୍କ ଜମି ଉପରେ ଥିବା ଧାତବ ଅଂଶ । ଚୁକ୍ତି ଅନୁଯାୟୀ ଏଥିରେ ତାଙ୍କର ନିଶ୍ଚୟ ଭାଗ ଅଛି । ଜମିଦାର ଓ ବୈଜ୍ଞାନିକଙ୍କ ମଧ୍ୟରେ ଝଗଡ଼ା ଲାଗିଲା, କିଏ ଏହାର ମାଲିକ ହେବ । ଜମିଦାର କହିଲେ, ଏହା ତାଙ୍କ ଜମିରେ ପଡ଼ିଛି । ତେଣୁ ସେ ଏହାର ମାଲିକ । ବୈଜ୍ଞାନିକ ଜଣକ କହିଲେ— ଚୁକ୍ତିବେଳେ ଏହା ଜମିରେ ନଥିଲା, ତେଣୁ ଜମିଦାରଙ୍କର ଏଥିରେ ଭାଗ ନାହିଁ । ସେ ଏହାର ଏକାଏକ ମାଲିକ । ଏହି ଯୁକ୍ତିତର୍କ ଚାଲିଥିଲାବେଳେ ଶୁଳ୍କ ବିଭାଗ ଇନ୍‌ସପେକ୍ଟର ଆସି ପହଞ୍ଚିଗଲେ । ସେ କହିଲେ—ଏହା ଦେଶ ବାହାରୁ ଆସିଛି, ଏହା ଉପରେ ଆବଶ୍ୟକୀୟ ଶୁଳ୍କ ଦିଆଯାଇନି । ତେଣୁ ଶୁଳ୍କ ନିୟମାନୁଯାୟୀ ଏହା ସରକାରଙ୍କ ଖାସ ଅଧୀନକୁ ଆସିବା କଥା । ପୁନଶ୍ଚ ଏହା ବାହାରୁ ଜମି ଉପରକୁ ଆସିଲାବେଳେ କାହାର ନାଁରେ ଆସିନାହିଁ । ତେଣୁ ଏହାର ମାଲିକ ଖୋଦ ସରକାର ।

## ଆଠ

ପୃଥିବୀପ୍ରସିଦ୍ଧ ଅଷ୍ଟ୍ରୋପଟ୍ଟରିକ ଜେମ୍‌ସ ସିମ୍ପସନ ବେଳେବେଳେ ଖୁବ୍ ହେଙ୍ଗଲା ହେଉଥିଲେ । ସେ ଦିନେ ରାତିରେ ତାଙ୍କ ଶୋଇବା ଘରେ ଶୋଇଥିଲେ । ଝରକାଟା ବନ୍ଦ ହୋଇଥିଲା ସତ, କିନ୍ତୁ ଗୋଟିଏ ଝରକାର କବାଟ ଢ଼ିଲା ଥିବାରୁ ପବନରେ ଆଘାତ ପାଇ ଧଡ଼ଧଡ଼ ହେଉଥିଲା । ଏହା ଫଳରେ ତାଙ୍କ ନିଦ ଭାଙ୍ଗିଯାଉଥିଲା । ଏମିତି ଦୁଇ ତିନିଥର ନିଦ ଭାଙ୍ଗିଗଲା ପରେ ସେ ବିରକ୍ତ ହୋଇ କବାଟ ଧଡ଼ ଧଡ଼ ହେବା ବନ୍ଦ କରିବା ପାଇଁ ଟେବୁଲ ଉପରେ ଥିବା ଖଣ୍ଡିଏ କାଗଜକୁ ଆଣି ମୋଡ଼ି କବାଟ ସନ୍ଧିରେ ଦେଇଦେଲେ । ଏହା ଫଳରେ କବାଟ ଧଡ଼ ଧଡ଼ ହେବା ବନ୍ଦ ହେଲା । ସେ ନିଶ୍ଚିନ୍ତରେ ଶୋଇଲେ । ତହିଁ ପରଦିନ ତାଙ୍କ ସ୍ତ୍ରୀ ଝରକା ଖୋଲିଲା ବେଳକୁ ସେ କାଗଜ ଖଣ୍ଡକ ଦେଖିଲେ । ସେ କାଗଜ ଖଣ୍ଡକ ହେଉଛି ଦଶପାଉଣ୍ଡ ମୁଦ୍ରାର ଏକ ନୋଟ, ଯାହାର ଭାରତୀୟ ମୂଲ୍ୟ ହେଉଛି ସେ କାଳର ଦୁଇଶହ ଟଙ୍କା ।

## ନଅ

କେନନ୍ ଯୋସେଫ ଷ୍ଟେଟ୍‌ଲ ରୋମ୍ ବିଶ୍ୱବିଦ୍ୟାଳୟର ଜ୍ୟୋତିର୍ବିଜ୍ଞାନ ଅଧ୍ୟାପକ ଥିଲେ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ । ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରୁଛି ବୋଲି ନାନା ପ୍ରମାଣ ଦେଇ ସେ ଏକ ପ୍ରବନ୍ଧ ଲେଖିଥିଲେ । ଏହି

ପ୍ରବନ୍ଧଟି କୋପର୍‌ନିକସ୍‌ଙ୍କ ମତକୁ ସମର୍ଥନ କରୁଥିଲା । ସେ ଏହି ପ୍ରବନ୍ଧଟିକୁ ପ୍ରକାଶ ପାଇଁ ଏକ ବୈଜ୍ଞାନିକ ପତ୍ରିକାକୁ ପଠାଇଥିଲେ । ପତ୍ରିକାର ସମ୍ପାଦକମାନେ ଦେଖିଲେଯେ ପୋପ ଓ ତାଙ୍କ ପରିଚାଳିତ ଚର୍ଚ୍ଚ ଏହା ବିରୋଧରେ । ଏହାକୁ ପ୍ରକାଶ କଲେ କାଳେ ସେମାନେ ପତ୍ରିକା ବିରୋଧରେ ଯିବେ, ଏହି ଭୟରେ ସେମାନେ ପ୍ରବନ୍ଧଟିକୁ ପ୍ରକାଶ କରିବାକୁ ମନା କରିଦେଲେ । କିନ୍ତୁ ସେଟ୍‌ଲ ଯାଇ ସମ୍ପାଦକମଣ୍ଡଳୀଠାରେ ଆପତ୍ତି କଲେ ଏହା କାହିଁକି ପ୍ରକାଶ କରା ନଯିବ । ତେଣୁ ସମ୍ପାଦକମାନେ ବାଧ୍ୟ ହୋଇ ଚର୍ଚ୍ଚ କର୍ତ୍ତୃପକ୍ଷଙ୍କୁ ଏକଥା ଜଣାଇଲେ । ଚର୍ଚ୍ଚ କର୍ତ୍ତୃପକ୍ଷ ୧୮୨୦ ମସିହା ଅଗଷ୍ଟ ମାସ ୧୬ ତାରିଖ ଦିନ ଏହାକୁ ଆଲୋଚନା କରିବା ପାଇଁ ଏକ ସମ୍ମିଳନୀ ଡାକିଲେ । ସେତେବେଳକୁ ଲୋକମାନେ ସୂର୍ଯ୍ୟ ସ୍ଥିର ଓ ପୃଥିବୀ ଘୂରୁଛି ତଥ୍ୟକୁ ଏକପ୍ରକାର ଗ୍ରହଣ କରିନେଲେଣି । ତେଣୁ ସେମାନେ ବାଧ୍ୟ ହୋଇ ସମ୍ମିଳନୀରେ ଠିକ୍ କଲେ ଯେ ସେଟ୍‌ଲଙ୍କ ତଥ୍ୟ ଠିକ୍ । କାରଣ ୧୮୨୦ ମସିହା ଅଗଷ୍ଟ ମାସ ୧୬ ତାରିଖ ପର୍ଯ୍ୟନ୍ତ ସୂର୍ଯ୍ୟ ପୃଥିବୀ ଚାରିପାଖରେ ଘୂରୁଥିଲା । ଏହି ତାରିଖଠାରୁ ଚର୍ଚ୍ଚର ଅନୁମତି ନେଇ ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରିବା ଆରମ୍ଭ କରିଛି ।

## ଦଶ

ପୃଥିବୀର ସର୍ବଶ୍ରେଷ୍ଠ ପଦାର୍ଥ ବିଜ୍ଞାନବିତ୍ ଓ ଗଣିତଜ୍ଞ ଆଲବର୍ଟ ଆଇନଷ୍ଟାଇନ୍ ଜଣେ ସୁଦକ୍ଷ ବେହେଲାବାଦକ ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଯେତେବେଳେ ସେ ପଦାର୍ଥବିଜ୍ଞାନ ଓ ଗଣିତ

ଗବେଷଣାରେ ବ୍ୟସ୍ତ ରହୁ ନଥିଲେ, ସେତେବେଳେ ସେ ବେହେଲା ଆଣି ମନକୁ ମନ ବଜାଉଥିଲେ । ବେହେଲା ବଜାଇବାରେ ସେ ଏତେ ଦକ୍ଷ ଥିଲେ ଯେ ବଡ଼ ବଡ଼ ବେହେଲା-ବାଦକମାନଙ୍କ ସହିତ ମଧ୍ୟ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହେଉଥିଲେ । ଥରେ ଇଉରୋପର ସର୍ବଶ୍ରେଷ୍ଠ ବେହେଲାବାଦକ ଆର୍ଥର ସ୍କନବେଲଙ୍କ ସହିତ ପ୍ରତିଯୋଗିତା କରିବା ପାଇଁ ଅବତୀର୍ଣ୍ଣ ହୋଇ ବେହେଲା ବଜାଉ ବଜାଉ ନିଜ ଗବେଷଣା ସମ୍ପର୍କରେ ଚିନ୍ତା କରିପକାଇ ବଜାଇବାରେ ଭୁଲ କରିପକାଇଲେ । ଆଇନଷ୍ଟାଇନ୍‌ଙ୍କୁ ଏଭଳି ଭୁଲ କରିପକାଇବା ଦେଖି ସ୍କନବେଲ କହିଲେ, "ଏ କଣ ଆଇନଷ୍ଟାଇନ, ତୁମକୁ ଗଣି ଆସୁନାହିଁ କଅଣ ? ଏମିତି ପିଲାଳିଆ ଭୁଲ କ'ଣ କରିପକାଉଛ ?"



# ସପ୍ତମ ଅଧ୍ୟାୟ

## ଏକ

୧୯୩୨ ମସିହାର ରସାୟନ ବିଜ୍ଞାନରେ ନୋବେଲ ପୁରସ୍କାର ବିଜେତା ମାର୍କିନ ବୈଜ୍ଞାନିକ ଇରଭିଙ୍ଗ ଲେଙ୍ଗମୁୟର ଜଣେ ଅତି ସାଦାସିଧା ଲୋକ ଥିଲେ । ଥରେ ସେ ହଙ୍ଗେରୀ ରାଜ୍ୟର ରାଜଧାନୀ ବୁଡ଼ାପେଷ୍ଟରେ ଏକ ସଭାରେ ଭାଷଣ ଦେବାକୁ ନିମନ୍ତ୍ରିତ ହୋଇଥିଲେ । ତାଙ୍କ ସହିତ ଇଉରୋପରୁ ଆଉ କେତେଜଣ ବୈଜ୍ଞାନିକ ମଧ୍ୟ ଭାଷଣ ଦେବା କଥା । ସେହି ସଭାକୁ ନିମନ୍ତ୍ରିତ ହୋଇ ଦର୍ଶକ ଭାବରେ ବୁଡ଼ାପେଷ୍ଟ ସହରର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ମଧ୍ୟ ଆସିଥାନ୍ତି । ଏପରିକି ହଙ୍ଗେରୀ ରାଜପରିବାର ମଧ୍ୟରୁ କେତେଜଣ ଦର୍ଶକ ଭାବରେ ଆସିଥାନ୍ତି । ଏତେଗୁଡ଼ିଏ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଦେଖି ବକ୍ତାମାନେ କେମିତି ସମ୍ବୋଧନ କରିବେ ସେଇଟା ହେଲା କଥା । "ଉପସ୍ଥିତ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳାଗଣ" ପରିବର୍ତ୍ତେ ସେମାନେ ପ୍ରତ୍ୟେକ ବିଶିଷ୍ଟ ବିଶିଷ୍ଟ ଦର୍ଶକଙ୍କ ନାଁ, ଉପାଧି ଉଚ୍ଚାରଣ କରି ବକ୍ତୃତା ଆରମ୍ଭ କଲେ । ଭୟ, କାଳେ ତାହା ନକଲେ ଅଭଦ୍ରତା ହୋଇଯିବ । ଅନ୍ୟମାନେ ଖରାପ ଭାବିବେ । ଏହିଭଳି ସମ୍ବୋଧନ କରିବା ଫଳରେ ସେମାନଙ୍କ ଭାଷଣ ଅତ୍ୟଧିକ ଦୀର୍ଘ ହେଲା । ସମ୍ବୋଧନ ପର୍ବ

ହୁଏ ଭାଷଣର ଅଧା, ତେବେ ସେମାନେ କହିବେ କ'ଣ ଓ ଲୋକେ ଶୁଣିବେ କଅଣ ?

କିନ୍ତୁ କିଛି ସମୟ ପରେ ଲେଙ୍ଗମୁୟିରଙ୍କୁ ଯେତେବେଳେ କହିବାକୁ ଅନୁରୋଧ କରାଗଲା, ସେ ସଙ୍ଗେ ସଙ୍ଗେ ଉଠିପଡ଼ି କିଛି ସମ୍ବୋଧନ ନକରି ବକ୍ତୃତା ଆରମ୍ଭ କରିଦେଲେ । ଏହା ଦେଖି ଉପସ୍ଥିତ ଶ୍ରୋତାମାନେ ଅତ୍ୟନ୍ତ ଖୁସି ହୋଇ କରତାଳି ଦେଲେ । ମାର୍କିନ ବୈଜ୍ଞାନିକଙ୍କ ସିଧାସଳଖ ବକ୍ତୃତା ସେମାନଙ୍କୁ ଖାଲି ଭଲ ଲାଗିଲାନି, ସେମାନେ ଘରଆଡ଼େ ଏହାର ଭୂରିଭୂରି ପ୍ରଶଂସା ଗାଇ ବୁଲିଲେ ।

## ଦୁଇ

କେମ୍ବ୍ରିଜ୍‌ର ସୁବିଖ୍ୟାତ ବୈଜ୍ଞାନିକ ଅଧ୍ୟାପକ ଚାର୍ଲସ ଟାଉନ୍‌ସେଣ୍ଡ କେପଲେଣ୍ଡ ସବଦା ଗୋଟିଏ ବହୁତଳ ପ୍ରାସାଦର ଶେଷ ମହଲାରେ ନିଜେ ଗବେଷଣାଗାର ପ୍ରତିଷ୍ଠା କରିଥିଲେ । ସେହି ଘରଟି ସଂକୀର୍ଣ୍ଣ, ଧୂଳିଧୂସର ହେଲେହେଁ ସେଇ ଘରଟିକୁ ସେ ଛାଡ଼ୁ ନଥିଲେ । ଥରେ ତାଙ୍କୁ ତଳ ମହଲାରେ ଏକ ବଡ଼ ପ୍ରଶସ୍ତ ଘର ଦିଆଗଲା ଗବେଷଣାଗାର କରିବା ପାଇଁ । ସେ ମନା କରିଦେଲେ ତଳକୁ ଯିବାପାଇଁ । କହିଲେ—ସେ ଏଠାରେ ବେଶ୍ ଭଲରେ ଅଛନ୍ତି । କାରଣ, ଏହା କେମ୍ବ୍ରିଜର ଏକମାତ୍ର ସ୍ଥାନ, ଯେଉଁ କୋଠରି ଉପରକୁ ଭଗବାନଙ୍କ ଛଡ଼ା ଆଉ କେହି ନଥାନ୍ତି ।

## ତିନି

ସ୍କଟଲଣ୍ଡର ବିଖ୍ୟାତ ସର୍ଜନ ଜନ୍ ହଣ୍ଟର ଏକ ଅତି ପ୍ରସିଦ୍ଧ ଅଧ୍ୟାପକ ଥିଲେ । ତାଙ୍କ ଏନାଟମି ଲେକ୍‌ଚର ଶୁଣିବାକୁ ବହୁ

ଛାତ୍ର ଅନ୍ୟ କଲେଜରୁ ମଧ୍ୟ ଆସୁଥିଲେ । ତାଙ୍କ କ୍ଲାସରେ ସବୁଦିନେ ପ୍ରାୟ ଭିଡ଼ ଥାଏ । ଦିନେ ସେ କ୍ଲାସ ନେବାକୁ ଗଲାବେଳକୁ ଦେଖିଲେ ଯେ କ୍ଲାସରେ ମାତ୍ର ଜଣେ ପିଲା ବସିଛି । ପୂରା ହଲଟା ଶୂନ୍‌ଶାନ । ଆଉ କେହି ପିଲା ନାହାନ୍ତି । ସେ ପଶୁ ପଶୁ କହିଲେ, "ମାତ୍ର ଜଣେ ପିଲା ପାଇଁ ମୁଁ କ'ଣ ମୋ ସମୟ ନଷ୍ଟ କରିବ ?" ଏତକ କହି ସେ ପଶି ଆସୁ ଆସୁ ଫେରିଗଲେ । ଛାତ୍ରଜଣକ ଭାବିଲା—ଅଧ୍ୟାପକ କ୍ଲାସ ନେବେନି ବୋଧେ । ତାକୁ ଫେରିଯିବାକୁ ପଡ଼ିବ । ସେ ଉଠୁଛି ଫେରି ଯିବାକୁ, ଏହି ସମୟରେ ହଣ୍ଟର ହଲ ଭିତରକୁ ପଶିଆସିଲେ । ହାତରେ ଗୋଟାଏ ନରକଙ୍କାଳ । ନରକଙ୍କାଳଟିକୁ ଆଣି ସେ ପିଲାଟି ନିକଟରେ ଥୋଇଦେଇ ବକ୍ତୃତା ଆରମ୍ଭ କଲେ—"ତୁମେ ଜାଣିଛ......"

## ଗୁରୁ

ଆମେରିକାର ଲସ ଆଲମୋସ ପରମାଣୁବୋମା କାରଖାନାରେ ଯେଉଁ ବୈଜ୍ଞାନିକମାନେ କାମ କରୁଥିଲେ, ସେମାନଙ୍କର ପ୍ରକୃତ ନାମ ଲୁଚିଯାଇ ଏକ ମୁତଫରକା ନାଁ ଦିଆ ଯାଇଥିଲା । କାରଣ ପୂରାଯୋଜନାଟା ଅତି ଗୁପ୍ତ ରଖାଯାଇଥିଲା । ପରମାଣୁବୋମା କାରଖାନାର ନାଁ ଦିଆଯାଇଥିଲା, 'ଡି.ଏସ୍.ଏମ୍.' ବା Development of Substitute Materials.

ଏଥିରେ ଏକ ପ୍ରଧାନ କାର୍ଯ୍ୟରେ ନିଯୁକ୍ତ ଥିବା ଏନରିକୋ ଫେରମିଙ୍କ ନାଁ ଥିଲା ଫାରମର । ଏହି ଛଦ୍ମନାମ ଜଗୁଆଳି ସୈନ୍ୟବାହିନୀ ଦ୍ୱାରା ଏତେ ଅଭ୍ୟସ୍ତ ହୋଇଯାଇଥିଲା ଯେ

ସେମାନେ ପ୍ରକୃତ ନାଁ କହିଲେ ଭିତରକୁ ଛାଡ଼ୁ ନଥିଲେ । ସେହିଭଳି ଇଉଜିନ ଉଇଗନରଙ୍କ ନାଁ ଥିଲା ମିଷ୍ଟର ଓ୍ୱାଗ୍ନର । ସେ ପରମାଣୁବୋମାର ରୂପରେଖ ଦାୟିତ୍ୱରେ ଥିଲେ । ଦିନେ ଗେଟ୍ ପାଖରେ ଉଇଗନର ନିଜ ଛଦ୍ମନାମ ନ କହି ପ୍ରକୃତ ନାଁ କହିପକାଇଲାରୁ ଦରୱାନ ଭିତରକୁ ଛାଡ଼ିଲାନି । ଏହି ସମୟରେ ସେଇ ବାଟେ ଫେରମି ଯାଉଥିଲେ । ଉଇଗନରଙ୍କୁ ଦରୱାନ ନଛାଡ଼ିବା ଦେଖି କହିଲେ—'ହିଁ ହିଁ, ଏହାଙ୍କ ନାଁ ହେଲା ଓ୍ୱାଗନର ଯେମିତି ମୋ ନାଁ ଫାର୍ମର । ଫେରମିଙ୍କ କହିବାନୁସାରେ ଦରୱାନ ତାଙ୍କୁ ଛାଡ଼ିଦେଲେ । ସେହିଭଳି କଣ୍ଡ୍ରନଙ୍କର ଦୁଇଟି ଛଦ୍ମନାମ ଥିଲା, ଗୋଟିଏ ଆମେରିକାର ପଶ୍ଚିମ ଉପକୂଳ ପାଇଁ, ଅନ୍ୟଟି ପୂର୍ବ ଉପକୂଳ ପାଇଁ । ସେ ଥରେ ଉଡ଼ାଜାହାଜରେ ଆସୁ ଆସୁ ଉଡ଼ାଜାହାଜର ଷ୍ଟିଓ୍ୱାର୍ଡେସ କଣ୍ଡ୍ରନଙ୍କୁ ତାଙ୍କ ନାଁ ପଚାରିଲେ । ସେ କ'ଣ କହିବେ, କହିବା ପୂର୍ବରୁ ଷ୍ଟିଓ୍ୱାର୍ଡେସଙ୍କୁ ପଚାରିଲେ—"ଆମେ ବର୍ତ୍ତମାନ କେଉଁଠି ମେଡ଼େମ ? ପୂର୍ବ ଉପକୂଳରେ ନା ପଶ୍ଚିମ ଉପକୂଳରେ ?"

## ପାଞ୍ଚ

ପୃଥିବୀପ୍ରସିଦ୍ଧ ବୈଜ୍ଞାନିକ ନିଲ୍ସ ବୋହର ସିନେମା ଦେଖିବାକୁ ଭାରି ଭଲ ପାଉଥିଲେ; ବିଶେଷତଃ ଓ୍ୱେଷ୍ଟର୍ଣ୍ଣ ମୁଭି, ଯେଉଁଥିରେ ଗୁଳିଗୋଳା ପ୍ରଧାନ ବିଷୟବସ୍ତୁ ଥାଏ । ଯେତେବେଳେ ଚଳଚ୍ଚିତ୍ରର ନାୟକ ଓ ଖଳନାୟକ ଭିତରେ ଯୁଦ୍ଧ ଆରମ୍ଭ ହୁଏ, ପ୍ରଥମେ ପ୍ରଥମେ ଦେଖାଯାଏ ଯେମିତିକି ଖଳନାୟକ ଜିତିବ, କିନ୍ତୁ ପରେ ନାୟକ ଜିତେ, ଖଳନାୟକ ନାୟକ ହାତରେ

ପ୍ରାଣଦିଏ । ଏହା କାଳ୍ପନିକ ହୁଏ, କିନ୍ତୁ ବୋହର ତାଙ୍କର ଏକ ବୈଜ୍ଞାନିକ ତଥ୍ୟ ଏଥିପାଇଁ ପ୍ରଦାନ କରିଥିଲେ । ଖଳନାୟକକୁ ପ୍ରଥମେ ଭାବି ଠିକ୍ କରିବାକୁ ପଡ଼େ, କେତେବେଳେ ବନ୍ଧୁକରୁ ଗୁଳି ଫାଏର କରିବାକୁ ପଡ଼ିବ । ସେଥିପାଇଁ ଡେରି ହୋଇଯାଏ । ନାୟକ ହାତକୁ ବନ୍ଧୁକ ଆସିବାକ୍ଷଣି ସେ ଗୁଳି ଫୁଟାଏ, ଫଳରେ ଖଳନାୟକ ମରେ । ଏହି ତଥ୍ୟକୁ ସତ୍ୟ ବୋଲି ପ୍ରତିପାଦନ କରିବା ପାଇଁ ସେ ତାଙ୍କ ଛାତ୍ରମାନଙ୍କୁ ନେଇ ଖେଳନା ବନ୍ଧୁକ ସାହାଯ୍ୟରେ ଏକ ଅଭିନୟ ସମ୍ପାଦନ କରିଥିଲେ, ଯାହା ଫଳରେ ତାଙ୍କ ତଥ୍ୟ ଠିକ୍ ବୋଲି ଜଣା ପଡ଼ିଥିଲା ।

## ଛଅ

ପୃଥିବୀପ୍ରସିଦ୍ଧ ବୈଜ୍ଞାନିକ ମେଡ଼େମ କିଉରୀ ତାଙ୍କ ଯୌବନର ପ୍ରଥମ ପାଦରେ ସାଧାରଣ ପାଶ୍ଚାତ୍ୟ ଝିଅଙ୍କ ଭଳି ପ୍ରେମ କରିବାକୁ ଭୁଲି ନଥିଲେ । ସେତେବେଳେ ତାଙ୍କ ନାଁ ଥିଲା, ମୁନିଆ । ତାଙ୍କ ପ୍ରେମ ଅବଶ୍ୟ କୃତକାର୍ଯ୍ୟ ହୋଇ ନଥିଲା, ହୋଇଥିଲେ ହୁଏତ ସେ ଦୁଇଦୁଇ ଥର ପୃଥିବୀପ୍ରସିଦ୍ଧ ନୋବେଲ ପୁରସ୍କାର ବିଜେତା ମେଡ଼େମ କିଉରୀ ହୋଇପାରି ନଥାନ୍ତେ, ପୋଲଣ୍ଡର ଏକ ଜମିଦାରୀ ଘରର ବୋହୂ ଭାବରେ ଦିନ କାଟିଥାନ୍ତେ ।

ପୋଲଣ୍ଡର ରାଜଧାନୀ ଓ୍ୱାରସ ଠାରୁ ୮୦ ମାଇଲ ଦୂରରେ ଥିବା ସୁଜୁକି ଜମିଦାରଙ୍କ ଘରେ ଜମିଦାରଙ୍କ ଏକ ମାତ୍ର ଝିଅ ବ୍ରୋଙ୍କାକୁ ଟିଉସନ କରିବାପାଇଁ ମୁନିଆ ଏକ ଚାକିରି ପାଇଥିଲେ ।

ତାଙ୍କର ବୟସ ଯେତିକି, ଛାତ୍ରୀଟିର ବୟସ ମଧ୍ୟ ପ୍ରାୟ ସେତିକି । ଜମିଦାରଙ୍କ ଘରେ ରହି ଖାଇପିଇ ଝିଅଟିକୁ ପଢ଼ାଇବା ତାଙ୍କ କାମ । ଜମିଦାରଙ୍କ ପୁଅ କାଜମିର ଓ୍ୱାରସ ବିଶ୍ୱବିଦ୍ୟାଳୟର ଛାତ୍ର ଥିଲେ । ସେ ଛୁଟି ହେଲେ ନିଜ ଘରକୁ ଚାଲିଆସନ୍ତି । ସେ ଘରକୁ ଆସିଲେ ଯୁବତୀ ମୁନିଆ ସହିତ ସାକ୍ଷାତ ହୁଏ । ମୁନିଆର ସେତେବେଳେ ପୂର୍ଣ୍ଣ ଯୌବନ । ମୁନିଆର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ କାଜମିର ମୁନିଆକୁ ପ୍ରେମ କରିବାକୁ ଲାଗିଲେ । ମୁନିଆର କଥାବାର୍ତ୍ତା ଓ ନାଚ କାଜମିରଙ୍କୁ ମୁଗ୍‌ଧ କଲା । ମୁନିଆ ମଧ୍ୟ ନିଜକୁ ସମ୍ଭାଳି ନପାରି କାଜମିରକୁ ଭଲପାଇବାକୁ ଲାଗିଲା । ଦିନେ କାଜମିର ତାଙ୍କ ମା'କୁ ମୁନିଆକୁ ବିଭାହେବା କଥା କହିଲେ । ତାଙ୍କ ମା' କହିଲେ, "କଣ, ତୁ ଏତେବଡ଼ ଜମିଦାରଙ୍କ ପୁଅ ହୋଇ ଗରିବ ଜଣେ ମାଷ୍ଟରାଣୀକୁ ବିଭା ହେବୁ, ଯେଉଁ ମାଷ୍ଟରାଣୀ ଆମ ଘରେ ଚାକିରି କରୁଛି ? ଏହା କଦାପି ହୋଇ ନପାରେ । ଗରିବ ଜଣେ ମାଷ୍ଟ୍ରାଣୀକୁ ମୁଁ ମୋ ବୋହୂ କରି ଆଣିପାରିବିନି !"

ମୁନିଆ ଏକଥା ଶୁଣିପାରିଲା । ଏହା ଶୁଣି ତା ହୃଦୟ ଭାଙ୍ଗିଗଲା । ନିଜ ସ୍ୱପ୍ନ ସାର୍ଥକ ନ ହେବାରୁ ସେ ଆତ୍ମହତ୍ୟା କରିବାକୁ ପ୍ରୟାସ କଲା, କିନ୍ତୁ ସଫଳ ନ ହେବାରୁ ସେ ସେଠାରୁ ଚାକିରି ଛାଡ଼ିଦେଇ ନିଜ ଘରକୁ ଚାଲିଆସିଲା । ସେହିଦିନ ଠାରୁ ତାଙ୍କ ଜୀବନର ଗତିପଥ ବଦଳିଗଲା ।

## ସାତ

ପୃଥିବୀପ୍ରସିଦ୍ଧ ବୈଜ୍ଞାନିକ ତଥା ଗଣିତଜ୍ଞ ଆଲବର୍ଟ ଆଇନଷ୍ଟାଇନ ପିଲାଦିନେ ବିଶେଷ ଚାଲାଖ ନଥିଲେ । ସେ

ବଡ଼ହେଲା ପର୍ଯ୍ୟନ୍ତ ତାଙ୍କ ସମବୟସ୍କ ପିଲାଙ୍କ ଭଳି କଥା କହିପାରୁ ନଥିଲେ । ପିଲାଦିନେ ତାଙ୍କୁ ସାଙ୍ଗସାଥୀମାନେ ଗଧ ବୋଲି ଡାକୁଥିଲେ । ପିଲାଟିଦିନରୁ ତାଙ୍କର ଭଲ ଅଙ୍କ ହେଉ ନଥିଲା । ମାନସାଙ୍କ କରିପାରୁ ନଥିଲେ । ପଇସା ଦେଲେ ବଜାରକୁ ଯାଇ ହିସାବ କରି ଜିନିଷ ଖରିଦ କରିପାରୁ ନଥିଲେ । ହିସାବ କଲାବେଳେ ଭୁଲ କରିପକାଉଥିଲେ । ସେ ଥରେ ବସରେ ଗୋଟିଏ ସ୍ଥାନକୁ ଯାଇଥିଲେ । ଫେରିଲାବେଳେ ବସ୍-କଣ୍ଡକ୍ଟରକୁ ଖଣ୍ଡିଏ ନୋଟ ଦେଲେ । କଣ୍ଡକ୍ଟର ବସ୍‌ଭଡ଼ା କାଟି ବାକି ପଇସା ତାଙ୍କୁ ଫେରାଇଦେଲା । କଣ୍ଡକ୍ଟର ଯାହା ପଇସା ଫେରାଇଲା, ଆଇନଷ୍ଟାଇନଙ୍କ ହିସାବ ଅନୁସାରେ ତାହା କମ୍ ବୋଲି ଜଣାପଡ଼ିଲା । ସେ ମନେମନେ ଦୁଇ ଚାରିଥର ପୁଣି ହିସାବ କଲେ, ସବୁଥର ଦେଖିଲେ ପଇସା କମ ଅଛି । ତେଣୁ ସେ କଣ୍ଡକ୍ଟରକୁ କହିଲେ, "ତୁମେ କ'ଣ ମୋତେ କମ ପଇସା ଫେରାଇଲ ?"

କଣ୍ଡକ୍ଟର କହିଲା—"ନାହିଁତ, ମୁଁ ଠିକ ପଇସା ଫେରାଇଛି ।"

ଆଇନଷ୍ଟାଇନ କହିଲେ—"ହେଇ ଦେଖ, ତୁମେ ଯାହା ଫେରାଇଛ, ହିସାବ କରି ଦେଖିବ କମ ଅଛି ।"

କଣ୍ଡକ୍ଟର ସେ ପଇସା ଗଣି ପୁଣି କହିଲା—"ହଁ, ଠିକ ତ ଅଛି । କମ୍ ତ ନାହିଁ !"

"ହଁ କମ୍ ଅଛି"—ଆଇନଷ୍ଟ ଇନ ଜିଦ୍‌ଧରି କହିଲେ ।

"ବାବୁ, ତୁମକୁ ବୋଧେ ଅଙ୍କ ଜଣାନାହିଁ । ତା ନ ହୋଇଥିଲେ ଏହି ସାଧାରଣ ହିସାବଟାରୁ ମୋତେ କହନ୍ତ ଭୁଲ ହେଇଛି ବୋଲି ? ଠିକଏ ଭଲରକମ ଅଙ୍କ ପଢ଼ାପଢ଼ି କର ।"

ଆଇନଷ୍ଟାଇନ ଘରେ ଆସି କାଗଜ କଲମ ଧରି ହିସାବ କଲାରୁ କଣ୍ଡକ୍ଟର ଠିକ୍ ଦେଇଛି ବୋଲି ଜାଣିଲେ ।

## ଆଠ

ମ୍ୟାଡ଼ମ୍ କଉରୀ ତାଙ୍କ ପିଲାବେଳେ ଖୁବ୍ ଦୁଃଖକଷ୍ଟରେ ଅତି ଅଭାବ ଭିତରେ ପାଠ ପଢ଼ିଥିଲେ । ତାଙ୍କ ପାଖରେ ଟଙ୍କା ନଥିବାରୁ ସେ ପୋଲାଣ୍ଡରୁ ପାରିସକୁ ପଢ଼ିବା ପାଇଁ ଯାଇଥିଲେ ରେଲଗାଡ଼ିର ଚତୁର୍ଥଶ୍ରେଣୀ ଡବାରେ । ତୃତୀୟ ଶ୍ରେଣୀରେ ଯିବା ପାଇଁ ତାଙ୍କ ପାଖରେ ପଇସା ନଥିଲା । ଚତୁର୍ଥ ଶ୍ରେଣୀ ଡବାରେ ବେଞ୍ଚ ପଡ଼ି ନଥାଏ । ଯାତ୍ରୀମାନେ ଡବାର ଚଟାଣରେ ବସନ୍ତି । ଅତି ଗରିବ ନହେଲେ କେହି ଚତୁର୍ଥ ଶ୍ରେଣୀରେ ଯାଆନ୍ତିନ ।

ସେ ଯେଉଁ ଘରେ ରହିଥିଲେ, ଖୁବ୍ କମ ଟଙ୍କାରେ ଗୋଟିଏ ବଖରାଟିଏ ଭଡ଼ା ନେଇଥିଲେ । ସେଠି ଭଲ ପବନ ଯାଆସ କରୁ ନଥିଲା । ତେଣୁ ସେ ରୋଗାକ୍ରାନ୍ତ ହୋଇପଡ଼ୁଥିଲେ । ଖାଦ୍ୟାଭାବରୁ ସେ ଏତେ ଦୁର୍ବଳ ହୋଇଯାଇଥିଲେ ଯେ କ୍ଲାସରେ ଥରେ ପଢ଼ା ଚାଲିଥିଲା ବେଳେ ସେ ଅଚେତ ହୋଇ ପଡ଼ିଗଲେ । ପଇସା ଅଭାବରୁ ରୋଟି, ଅଣ୍ଡା, ଲହୁଣି ଖାଇ ନପାରି କେବଳ ମୂଳା ଓ ଶସ୍ତା ଫଳମୂଳ ଖାଉଥିଲେ । ଶୀତଦିନେ ପଇସା ଅଭାବରୁ ଘରକୁ ଗରମ ନକରି ପାରି ଶୀତରେ ଥରୁଥିଲେ ।

ପଇସା ଅଭାବରୁ ଜୋତା ନପିନ୍ଧି ଖାଲି ଗୋଡ଼ରେ କଲେଜକୁ ଯା'ଆସ କରୁଥିଲେ । କଉସିମା ଅଭାବରୁ ସନ୍ଧ୍ୟାବେଳେ କଲେଜ ଲାଇବ୍ରେରୀକୁ ଯାଇ ପଢ଼ାପଢ଼ି କରୁଥିଲେ । ରାତିରେ ଲାଇବ୍ରେରୀ ବନ୍ଦ ହୋଇଗଲେ ଘରକୁ ଆସି ଯାହାକିଛି କଉସିମା ଥାଏ ସେଥିରେ କଷ୍ଟେମଷ୍ଟେ ଲଣ୍ଠନ ଜାଳି ରାତିଦୁଇଟା ପର୍ଯ୍ୟନ୍ତ ପଢୁଥିଲେ ।

ଯେଉଁଦିନ ସେ କ୍ଲାସରେ ଅଚେତ ହୋଇପଡ଼ିଲେ, ଏହି ଖବର ଶୁଣି ତାଙ୍କ ଭଉଣୋଇ ତାଙ୍କୁ ନିଜ ଘରକୁ ନେଇଯିବାପାଇଁ ଆସିଥିଲେ । ସେ ଆସି ମେଘାଙ୍କୁ ପରୀକ୍ଷା କରି ଦେଖିଲେ ଯେ, ଖାଦ୍ୟାଭାବଜନିତ ଦୁର୍ବଳତା ଯୋଗୁଁ ତାଙ୍କର ଏହି ଅବସ୍ଥା ହୋଇଛି । ପରୀକ୍ଷା କରୁ କରୁ ପଚାରିଲେ "ତୁମେ ଆଜି କ'ଣ ଖାଇଥିଲ ମେଘା !"

ଏହି ପ୍ରଶ୍ନରେ ମେଘା ଆଶ୍ଚର୍ଯ୍ୟ ହୋଇଗଲେ । ଉତ୍ତର ଦେଲେ—

"କାହିଁକି ? ଆଜି ? ମୁଁ ଜାଣେନି । ଏହି କିଛି ସମୟ ତଳେ ତ ଖାଇଥିଲି !"

"କ'ଣ ଖାଇଥିଲ କହୁନାହଁ ?"

"ମୋର ମନେ ନାହିଁ ।"

"କିଛି ସମୟ ତଳେ କ'ଣ ଖାଇଥିଲ ମନେ ନାହିଁ ? ପାଠ କେମିତି ମନେ ରହୁଛି ?"

"କିଛି ଫଳ, କିଛି ଏଣୁତେଣୁ ଖାଇଥିଲି ।"

ଏଆଡ଼ୁ ସେଆଡ଼ୁ ପ୍ରଶ୍ନ କଲାରୁ ମେଷ୍ଟା ମାନିଗଲେ, ସେ ପୂର୍ବଦିନ ସନ୍ଧ୍ୟାରେ ରୋଟି ଆଦି ନଖାଇ କିଛି ମୂଳା ଓ କିଛି ଶସ୍ତା ଫଳମୂଳ ଖାଇଥିଲେ ।'

## ନଅ

ଦ୍ୱିତୀୟ ମହାସମର ପରେ ପରେ ଆମେରିକାର ହଲିଉଡ଼ସ୍ଥ ଏକ ବଡ଼ ଚଳଚ୍ଚିତ୍ର ନିର୍ମାତା ପରମାଣୁ ବୋମା ଉପରେ ଏକ ଚଳଚ୍ଚିତ୍ର ତିଆରି କରିବା ପାଇଁ ମନସ୍ଥ କଲେ । ପରମାଣୁ ବୋମା ତିଆରି କରିଥିବା ବଡ଼ ବଡ଼ ବୈଜ୍ଞାନିକମାନଙ୍କ ସହିତ ଏ ସମ୍ପର୍କରେ ଆଲୋଚନା ନ କଲେ ଏ ଦିଗରେ କିଛି କରିହେବନି । ତେଣୁ ସେ ଦିନେ ଯାଇ ଆମେରିକାର ଲସ୍ ଅଲାମୋସ୍‌ସ୍ଥିତ ପରମାଣୁ ବୋମା କାରଖାନାରେ ପହଞ୍ଚିଲେ । ଲସ୍ ଅଲାମୋସ୍ ଏକ ଛୋଟିଆ ସହର । ପରମାଣୁବୋମା କାରଖାନାରେ ଯେଉଁମାନେ କାମ କରନ୍ତି, ସେମାନେ ସମସ୍ତେ ସେହି ସହରରେ ରହନ୍ତି । ବୈଜ୍ଞାନିକମାନେ ଡକାହୋଇ ମିଟିଂକୁ ଆସିଲେ । ମିଟିଂ ଶେଷହେବା ପରେ ଚଳଚ୍ଚିତ୍ର-ନିର୍ମାତା ଜଣକ କହିଲେ, "ଆପଣମାନେ ବ୍ୟସ୍ତ ହେବେ ନାହିଁ । ମୁଁ ମୋ ଗାଡ଼ିରେ ଆପଣ-ମାନଙ୍କୁ ଆପଣମାନଙ୍କ ଘରେ ପହଞ୍ଚାଇଦେବି ।"

ମିଟିଂରେ ଯୋଗଦେଇଥିବା ବୈଜ୍ଞାନିକମାନଙ୍କ ମଧ୍ୟରେ ଫେରମି, ଆଲିସନ ଆଦି ବଡ଼ ବଡ଼ ବୈଜ୍ଞାନିକ ଥିଲେ । ସେମାନେ କହିଲେ, "ନାଇଁ ନାଇଁ, ଆମମାନଙ୍କ ଘର ତ ଏହି ନିକଟରେ, ଆମେମାନେ ଚାଲିଯିବୁ । କାରର ଆବଶ୍ୟକତା ନାହିଁ ।"

"ତା କେମିତି ହେବ ?" ନିର୍ମାତା ଜଣକ କହିଲେ, "ହେଇ ମୋ ଗାଡ଼ି ସେଠି ଠିଆ ହୋଇଛି । ଦୟାକରି ଗାଡ଼ିକୁ ଚାଲନ୍ତୁ ।"

ଫେରମି ଦେଖିଲେ ଅତି ବଡ଼ ଆକାରର କଳାରଙ୍ଗର ଏକ କେଡ଼ିଲାକ କାର ସେମାନଙ୍କୁ ଅପେକ୍ଷା କରୁଛି । ଗାଡ଼ିର ଡ୍ରାଇଭର ଏକ ଧଳାରଙ୍ଗର ମଖମଲ ପୋଷାକ ପିନ୍ଧି ସେମାନଙ୍କୁ ସଲାମ ବଜାଉଛି । ଗାଡ଼ିର ଚକ ପୁଣି ଚକ୍‌ଚକ୍ ଧଳା । ସେହି ଗାଡ଼ିରେ ବସି ସମସ୍ତେ ନିଜ ନିଜ ଘର ପାଖକୁ ଗଲେ । ସେମାନଙ୍କୁ ସେମାନଙ୍କ ଘର ସାମନାରେ ଗାଡ଼ିରୁ ଓହ୍ଲାଇ ଦେଉଁ ଦେଉଁ ନିର୍ମାତାଜଣକ କହିଲେ, "ଆପଣମାନେ କେଡ଼େ କେଡ଼େ ବଡ଼ ଲୋକ,ଆପଣମାନେ ତା' ଉପଲବ୍‌ଧି କରିପାରୁନାହାନ୍ତି । ପରମାଣୁ ବୋମାକୁ ଯେଉଁମାନେ ତିଆରି କରିଛନ୍ତି, ସେମାନେ କ'ଣ ଆମ ଭଳି ସାଧାରଣ ଲୋକ ?"

## ଦଶ

୧୯୩୭ ମସିହାରେ ଚିକିତ୍ସା ଓ ଶରୀର ବିଜ୍ଞାନରେ ନୋବେଲ ପୁରସ୍କାର ଲାଭ କରିଥିବା ବୈଜ୍ଞାନିକ ଆଲବର୍ଟ ସେଣ୍ଟ ଜିଅର୍ଜି କହନ୍ତି—"ମୋର କୌଣସି ଗ୍ରାହକ ଯଦି ମୋତେ ଆସି କହେ, ମୋତେ ଗବେଷଣାର ସୁବିଧା ଦିଅନ୍ତୁ, କାହିଁକିନା ମୁଁ ଜନସମାଜର ଉପକାର କରିବାକୁ ଚାହେଁ, ତେବେ ମୁଁ ସେମାନଙ୍କୁ କହିବି—ହଇଏ ବାବୁ,ଏହା ଦାତବ୍ୟ ଅନୁଷ୍ଠାନ ନୁହେଁ । ସମାଜର ଯଦି ଉପକାର କରିବାକୁ ଚାହଁ, ତେବେ କୌଣସି ଏକ ଦାତବ୍ୟ ଅନୁଷ୍ଠାନ ଖୋଜ ସେଥିରେ ଯୋଗ ଦିଅ, ଏଠାକୁ ଆସନା । ବୈଜ୍ଞାନିକ ଗବେଷଣା ହେଉଛି ପ୍ରକୃତିର ରହସ୍ୟ ଉଦ୍‌ଘାଟନ । ସେଥିରେ ଯେଉଁମାନେ ଆନନ୍ଦ ପାଆନ୍ତି ଓ ଆତ୍ମସନ୍ତୋଷ ପାଆନ୍ତି, ସେମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ ।



# ଅଷ୍ଟମ ଅଧ୍ୟାୟ

## ଏକ

ମ୍ୟାଡ଼ାମ କଉସ୍ତୀ ଯେତେବେଳେ ପିଏର କଉସ୍ତୀଙ୍କୁ ବିବାହ କଲେ, ସେ ରନ୍ଧାବଢ଼ା ଶିଖି ନଥିଲେ । ପିଲାଟିଦିନରୁ ତ ରୋଜଗାର କରିବା ପାଇଁ ଘର ଘର ବୁଲି ଟିଉସନ କରୁଥିଲେ, ଉଚ୍ଚ ଶିକ୍ଷା ଲାଭବେଳେ ପଇସା ଅଭାବରୁ ଶୁଖିଲା ରୋଟି, ଫଳମୂଳ ଖାଇ କ୍ଷୁଧା ମେଣ୍ଟାଉଥିଲେ, ଗରମ ଗରମ ରନ୍ଧା ଖାଦ୍ୟ ତାଙ୍କ ଭାଗ୍ୟରେ ଜୁଟିବ କୁଆଡ଼ୁ ? ଯାହା ବା ଜୁଟିଥିଲା, ଶସ୍ତା ପନିପରିବାକୁ ଆଣି ସିଝାଇବା ଓ ସେହି ସିଝାକୁ ଖାଇବା ତାଙ୍କର ଅଭ୍ୟାସ ଥିଲା । ମାଛ, ମାଂସ, ଅଣ୍ଡା ସହିତ କେବେ ତାଙ୍କର ଦର୍ଶନ ହେଉ ନଥିଲା । ବିଭାହେବା ପରେ ସେ ପ୍ୟାରିସର ତାଙ୍କ ସ୍ୱାମୀଙ୍କ ପାଖରେ ରହିଲେ । ପିଏରଙ୍କ ମା' ଦିନେ ମଫସଲ ଘରୁ ପୁଅଠାକୁ ଆସିଥାନ୍ତି । ଶାଶୁଙ୍କୁ ପାଉଁରୁଟି ଟୋଷ୍ଟ ସହିତ ଆମଲେଟ୍ ଖାଇବାକୁ ଦେବା ଇଚ୍ଛା ମେରୀଙ୍କର । ମେରୀ ଆମଲେଟ୍ ଖାଇଛନ୍ତି ସତ, କେମିତି ତିଆରି ହୁଏ ଜାଣନ୍ତିନି । ବହୁତ ଚେଷ୍ଟାକରି ଚୂଲ୍ଲୀ ପାଖରେ ବସି ବସି ଆମଲେଟ ତିଆରି କଲେ । ତାହା ଭଲ ହୋଇପାରିଲାନି, ଅଧା ପୋଡ଼ିଗଲା । ଏହା ଦେଖି ମ୍ୟାଡ଼ାମ କଉସ୍ତୀଙ୍କ ଶାଶୁ କହିଲେ, "ଓ୍ୱାରସ ଝିଅମାନଙ୍କୁ ତାଙ୍କ ବାପା

ମା'ମାନେ ଆଜି କ'ଣ ଯେ ଶିଖାଇଥାନ୍ତି, ମୁଁ ଜାଣିପାରୁନି । ସାମାନ୍ୟ ଆମଲେଟ୍‌ଟାଏ ତ ଆସୁନି, ଆଜି କ'ଣ ଆସିବ ?"

ଏଇ କଥା କେଇପଦ ମେଡାମ୍‌ଙ୍କୁ ବଡ଼ ବାଧିଲା । ଫରାସୀ ଭାଷାରେ ରନ୍ଧାବଢ଼ା ସମ୍ପର୍କରେ ଯେତେ ବହି ଥିଲା, ସେସବୁ ଅଣାଇ ପଢ଼ାପଢ଼ି କରି ଭଲଭାବରେ ରନ୍ଧାବଢ଼ା କରିବାକୁ ଲାଗିପଡ଼ିଲେ ମ୍ୟାଡ଼ାମ କାଉରୀ ।

## ଦୁଇ

ବହୁତ ଦିନ ତଳର କଥା । ଫରାସୀ ଦେଶର ବିଶ୍ୱବିଖ୍ୟାତ ନୋବେଲ ପୁରସ୍କାରପ୍ରାପ୍ତ ବୈଜ୍ଞାନିକ ହେନେରୀ ବେକ୍‌ରେଲ ଥରେ ଲଣ୍ଡନ ସହରକୁ ବକ୍ତୃତା ଦେବାପାଇଁ ଯାଇଥିଲେ । ତାଙ୍କ ସୁଟ୍ ଭିତର ୱେଷ୍ଟକୋଟର ତଳପାଖ ପକେଟରେ କ'ଣ ଟିକିଏ ଖୁବ୍ କମ ପରିମାଣର ପଦାର୍ଥ ଗୋଟିଏ କାଚନଳୀ ଭିତରେ ପୂରାଇ ରଖିଥିଲେ । ପଦାର୍ଥଟି ଏତେ କମ୍ ଯେ ତାହା ଗୋଟିଏ ପିନ୍‌କଣ୍ଟା ମୁଣ୍ଡଠାରୁ ଅଧିକ ହେବନି । ଏହି ପଦାର୍ଥଟି କିନ୍ତୁ ଏତେ ମୂଲ୍ୟବାନ୍ ଯେ ତା'ର ଦାମ କଳନା କରିବା ଅସମ୍ଭବ । କାଳେ ଏହି ପଦାର୍ଥଟି କେଉଁଠି ହାତଛଡ଼ା ହୋଇଯିବ, ଏହି ଭୟରେ ସେ ଏହାକୁ ଅନ୍ୟ କେଉଁଠି ନରଖି ସବୁବେଳେ ନିଜ କୋଟ ପକେଟରେ ରଖିଥାନ୍ତି ।

ଲଣ୍ଡନ ସହରରେ ଦଶଦିନ ରହିବା ପରେ ଦିନେ ସେ ହଠାତ୍ ନିଜ ତଳପେଟରେ ବ୍ୟଥା ଅନୁଭବ କଲେ । ଭିତର ୱେଷ୍ଟକୋଟ ପକେଟରେ ସେ ଯେଉଁଠି ଏହି ପଦାର୍ଥଟିକୁ ରଖୁଥିଲେ, ଠିକ୍ ତାରି ତଳେ ତାଙ୍କୁ ଦରଜ ଲାଗୁଥିଲା ।

ଜାମାପକେଟରେ କ'ଣ ହେଲା ଭାବି ସେ ଜାମାପଟା ଖୋଲି ଦେଖିଲେ ସେ ସ୍ଥାନଟି କଳା ପଡ଼ିଯାଇଛି ; ପୋଡ଼ିଗଲା ଭଳି ଦିଶୁଛି । ନିଆଁ ଲାଗିନି, କି ଗରମ ଲାଗିନି, ସ୍ଥାନଟି ପୋଡିଗଲା କେମିତି ? ସେ ସଙ୍ଗେ ସଙ୍ଗେ ଚିକିତ୍ସକମାନଙ୍କ ପରାମର୍ଶ ନେଲେ । ସେମାନେ କିଛି କହି ପାରିଲେନି । ରୋଗ କ'ଣ ଚିହ୍ନି ପାରିଲେନି ? କାରଣ କହିବାତ ଦୂରର କଥା । ଡାକ୍ତରମାନେ ଯେତେ ଯୁଆଡ଼ୁ ଔଷଧ ଦେଲେ, ଘା'ଟା ମୋଟେ ଭଲ ହେଲାନି । ଡାକ୍ତରମାନେ ସନ୍ଦେହରେ ପଡ଼ିଲେ, ଏହା ଆଉ କୌଣସି ମାରାତ୍ମକ ରୋଗର ଆରମ୍ଭ ନୁହେଁ ତ ? ସେମାନଙ୍କ ଚେଷ୍ଟା ବିଫଳ ହେବା ଫଳରେ ସେମାନେ ବାଧହୋଇ ଚୁପ୍ ରହିଲେ ।

ଏହିଭଳି କିଛିଦିନ କଟିଗଲା । ପ୍ରାୟ ପନ୍ଦର ଷୋହଳ ଦିନ ପରେ ଘା'ଟାର ଚେଜ ମଉଳି ଆସିଲା । ଏହାର କିଛିଦିନ ପରେ ଘା'ଟା ମନକୁ ଭଲ ହୋଇଗଲା । ଘା'ଟା ଭଲ ହୋଇଯିବାର କିଛିଦିନ ପରେ ବେକ୍‌ରେଲ ଜାଣିପାରିଲେ ଏହି ଘା'ର କାରଣ କଅଣ । ବେକ୍‌ରେଲ ନିଜର ଭିତର କୋଟ ପକେଟରେ ଗୋଟିଏ କାଚନଳୀ ଭିତରେ ରଖିଥିଲେ ନୂଆ ହୋଇ ଆବିଷ୍କୃତ ହୋଇଥିବା ରେଡ଼ିୟମ ଧାତୁ । ମେଡ଼େମ କ୍ୟୁରୀଙ୍କ ଆବିଷ୍କୃତ ଏହି ରେଡ଼ିୟମ ଧାତୁରୁ ସାମାନ୍ୟ ଟିକିଏ ସଙ୍ଗରେ ଆଣିଥିଲେ ବାଲ୍‌ଡର ବୈଜ୍ଞାନିକମାନଙ୍କୁ ଦେଖାଇବା ପାଇଁ । ସେହି ରେଡ଼ିୟମରୁ ନିର୍ଗତ ହେଉଥିବା ଆଲ୍‌ଫା ରଶ୍ମି ଏହି ଘା'ଟା ପାଇଁ ଦାୟୀ ।

### ତିନି

କ୍ୱାଣ୍ଟମ୍ ତଥ୍ୟର ପ୍ରଣେତା ନୋବେଲ ପୁରସ୍କାର ବିଜେତା ମେକ୍‌ସ ପ୍ଲାଙ୍କ ବର୍ଲିନ ବିଶ୍ୱବିଦ୍ୟାଳୟର ଛାତ୍ର ଥିବବେଳେ ଥରେମୋ-

ଡାଇନେମିକ୍ସର ଦ୍ୱିତୀୟ ନିୟମ ଉପରେ ଗବେଷଣା କରି ୧୮୭୯ ମସିହାରେ ପି-ଏଇଚ. ଡି. ଡିଗ୍ରୀ ପାଇଁ ଏକ ସନ୍ଦର୍ଭ ଦାଖଲ କରିଥିଲେ । ତାଙ୍କ ସନ୍ଦର୍ଭର ପରୀକ୍ଷକ ଥିଲେ ସୁପ୍ରସିଦ୍ଧ ବୈଜ୍ଞାନିକ ହେଲମ୍‌ହୋଲ୍‌ଜ ଓ କିରଚଫ୍ । ସେ ଦୁହେଁ ତାଙ୍କ ସନ୍ଦର୍ଭଟିକୁ ନପଢ଼ି ପି-ଏଇଚ. ଡି. ଡିଗ୍ରୀ ପାଇଁ ସୁପାରିଶ କରି-ଦେଲେ । ତାର କାରଣ ହେଉଛି ସେମାନେ ମେକ୍ସ ପ୍ଲେଙ୍କଙ୍କୁ ପଦାର୍ଥବିଜ୍ଞାନର ଓ ଗଣିତ ସେମିନାରରେ ଦେଖି ତାଙ୍କ ଅପୂର୍ବ ମେଧାଶକ୍ତିର ପରିଚୟ ପାଇଥିଲେ । ତେଣୁ ସନ୍ଦର୍ଭଟି ପଢ଼ିବାର ଆବଶ୍ୟକତା ନ ଥିଲା । ମେକ୍ସ ପ୍ଲେଙ୍କ ପରେ ଜାଣିଲେ ଯେ ତାଙ୍କ ସନ୍ଦର୍ଭଟି ପଢ଼ା ନହୋଇ ତାଙ୍କୁ ଡିଗ୍ରୀ ମିଳିଯାଇଛି । ଏମିତିକି ତାଙ୍କ ସନ୍ଦର୍ଭର ମୁଖବନ୍ଧ କି ସୂଚୀପତ୍ରକୁ ମଧ୍ୟ କେହି ଆଖି ପକାଇ ନାହାନ୍ତି । କିରଚଫ ଯଦି ଭୁଲରେ ଆଖିପକାଇ ଥାଆନ୍ତେ, ତେବେ ସେ ତାକୁ କାଟି ଦେଇଥାନ୍ତେ, ତାଙ୍କୁ ଡିଗ୍ରୀ ମିଳିପାରି ନଥାନ୍ତା ।

## ଟିକସ

ଇଂଲଣ୍ଡର ସୁବିଖ୍ୟାତ ବୈଜ୍ଞାନିକ ମାଇକେଲ ଫାରାଡେ ବିଦ୍ୟୁତ୍ ଡାଇନାମା ଓ ଟ୍ରାନ୍ସଫର୍ମରର ମୂଳ ନିୟମ ଆବିଷ୍କାର କରିସାରିବା ପରେ ଦିନେ ସେ ତାଙ୍କ ଗବେଷଣାଗାରକୁ ଆସିଥିବା ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ତାଙ୍କ ଆବିଷ୍କାରର ଗୁରୁତ୍ୱ କଥା ବୁଝାଉଥିଲେ । ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ମଧ୍ୟରେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଗ୍ଲାଡ଼ଷ୍ଟୋନ ଉପସ୍ଥିତ ଥିଲେ । ମାଇକେଲ ଫାରାଡେ ବୁଝାଇସାରିଲା ପରେ ଗ୍ଲାଡ଼ଷ୍ଟୋନ ମନ୍ତବ୍ୟ ଦେଲେ—"ହଁ,ଇଏ ଗୋଟେ ଉଦ୍ଭାବନ ଯେ ଏହାର ଉପଯୋଗିତା କଅଣ ଅଛି ?" ମାଇକେଲ ଫାରାଡେ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ କହିଲେ, "ମହାଶୟ,

ଏହି ଆବିଷ୍କାରର ବ୍ୟବହାରରୁ ଆପଣଙ୍କ ସରକାର ଦିନେ ଯଥେଷ୍ଟ କର ପାଇପାରିବେ ।”

## ପାଞ୍ଚ

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଇଂଲଣ୍ଡର ବଡ଼ ବଡ଼ ଡାକ୍ତରଖାନାମାନଙ୍କରେ ରୋଗୀମାନଙ୍କ ମୃତ୍ୟୁହାର ଏତେ ଅଧିକ ଥିଲା ଯେ ଲୋକେ ଡାକ୍ତରଖାନାକୁ ଚିକିତ୍ସା ପାଇଁ ଯିବାକୁ ଭୟ କରୁଥିଲେ । ଡାକ୍ତରଖାନାରେ ଯଦିଓ ବିନା ପଇସାରେ ଲୋକେ ଚିକିତ୍ସା ପାଉଥିଲେ,ତଥାପି ଏହି ମୃତ୍ୟୁହାର ଅଧିକ ଯୋଗୁଁ ସେମାନେ ଚିକିତ୍ସା ପାଇଁ ଯିବାକୁ କୁଣ୍ଠାବୋଧ କରୁଥିଲେ । ଲଣ୍ଡନର ସେଣ୍ଟ ବାର୍‌ଥୋଲମିଉ ହସ୍‌ପିଟାଲରେ ସେତେବେଳେ ଏକ ବିଚିତ୍ର ନିୟମ ଥିଲା ଯେ ଯେଉଁମାନେ ସେଠାରେ ଚିକିତ୍ସା ପାଇଁ ଭର୍ତ୍ତି ହେଉଥିଲେ, ସେମାନଙ୍କୁ ଅନ୍ୟ ଫିସ ସହିତ ଆଗତୁରା ମରିବା ତଥା କବର ଦେବା ଖରଚ ବାବଦକୁ ଗୋଟିଏ ପାଉଣ୍ଡ ପାଖାପାଖି ଅଧିକା ଫିସ ଦେବାକୁ ପଡୁଥିଲା । ସେମାନେ ଯଦି ଭାଗ୍ୟକ୍ରମେ ଭଲହୋଇ ଘରକୁ ଫେରୁଥିଲେ, ତେବେ ଏହି ଅର୍ଥ ଡାକ୍ତରଖାନାରୁ ବିଦା ହେଲାବେଳେ ଫେରସ୍ତ ପାଉଥିଲେ ।

## ଛଅ

ଦିନେ ଇଂଲଣ୍ଡର ସୁବିଖ୍ୟାତ ବୈଜ୍ଞାନିକ ତଥା କେଭେଣ୍ଡିସ ପଦାର୍ଥବିଜ୍ଞାନ ଗବେଷଣାଗାରର ଅଧକ୍ଷ ସାର ଜେ. ଜେ. ଟମ୍ପସନ ଆମେରିକାର ୟେଲ ବିଶ୍ୱବିଦ୍ୟାଳୟର ପଦାର୍ଥବିଜ୍ଞାନ ଅଧାପକ ବିମଷ୍ଟେଡ଼୍‌ଙ୍କ ସହିତ ବସି କଥା ହେଉଥିଲେ । କଥା ହେଉ ହେଉ ଟମ୍ପସନ କେମ୍ବ୍ରିଜ-ଅକ୍‌ସଫୋର୍ଡ଼ ଭିତରେ ହେଉଥିବା

ନୌକାଚାଳନା ପ୍ରତିଯୋଗିତା କଥା ପଡ଼ିଲା । ଏହି ପ୍ରତିଯୋଗିତା କେମିତି ହୁଏ, ଲୋକେ ଏହାକୁ କେମିତି ବିପୁଳ ସଂଖ୍ୟାରେ ଦେଖିବାକୁ ଆସନ୍ତି, ସାର ଜେ: ଜେ: ବର୍ଣ୍ଣନା କଲେ । ଏହି ସମୟରେ ବିମ୍‌ଷ୍ଟେଡ୍‌ ଆମେରିକାରେ ହାରଭାର୍ଡ଼ ୟେଲ ବିଶ୍ୱବିଦ୍ୟାଳୟ ଭିତରେ ହେଉଥିବା ସେହିଭଳି ନୌକାଚାଳନା ପ୍ରତିଯୋଗିତା କଥା କହିଲେ । ସେହି ପ୍ରତିଯୋଗିତାକୁ ଆମେରିକାର ବହୁ ବିଶିଷ୍ଟ ଲୋକ ଦେଖିବାକୁ ଆସନ୍ତି । ଯେଉଁ ନଦୀରେ ଏହି ପ୍ରତିଯୋଗିତା ହୁଏ, ସେହି ନଦୀ କୂଳରେ ଗୋଟିଏ ରେଳଲାଇନ ପଡ଼ିଛି । ସେହି ଲାଇନ ଉପରେ ଗୋଟିଏ ଟ୍ରେନ ନୌକାଚାଳନା ସଙ୍ଗେ ସଙ୍ଗେ ଗତିକରେ । ସେଥିରେ ଦର୍ଶକମାନେ ବସି ନୌକା ସଙ୍ଗେ ସଙ୍ଗେ ପ୍ରତିଯୋଗିତା ଦେଖି ଯାଆନ୍ତି ଓ ମୂଳରୁ ଶେଷ ପର୍ଯ୍ୟନ୍ତ ସବୁ ଠିକଣାଗି ଦେଖିବାକୁ ପାଆନ୍ତି । ଏହା ଶୁଣି ସାର ଜେ.ଜେ. କହିଲେ—"ଆଁ ? ତୁମ ରେଳଗାଡ଼ିଗୁଡ଼ାକ କ'ଣ ଏତେ ଧୀରେ ଧୀରେ ଚାଲେ ?"

"ମୋଟେ ନୁହଁ", ବିମ୍‌ଷ୍ଟେଡ୍‌ ଉତ୍ତରଦେଲେ, "ଆମ ନୌକାଗୁଡ଼ିକ ରେଳଗାଡ଼ି ବେଗରେ ଚାଲେ ।"

## ସାତ

ଆଲବର୍ଟ ଆଇନଷ୍ଟାଇନଙ୍କୁ ଥରେ କେତେଜଣ ସାମ୍ବାଦିକ ଘେରିଯାଇ ପଚାରିଲେ, "ଆପଣ ଯେଉଁ ଆପେକ୍ଷିକ ତଥ୍ୟ ଆବିଷ୍କାର କଲେ, ଏହା ଏତେ କଠିନ ଯେ ଆମେ କିଛି ଧାରଣା କରିପାରୁନୁ । ଲୋକେ କଅଣ କହୁଛନ୍ତି ଆପଣଙ୍କ ତଥ୍ୟକୁ ସାରା ପୃଥିବୀରେ କେହି ବୁଝିପାରୁ ନାହାନ୍ତି । ଆପଣ ଆମ୍ଭମାନଙ୍କୁ ଟିକିଏ ସରଳ କରି କହିବେ କି ଆପେକ୍ଷିକ ତଥ୍ୟର ସାରମର୍ମ କଅଣ ?"

ହସିଲେ ଆଇନ ଷ୍ଟାଇନ, କହିଲେ, "ମୋ ତଥ୍ୟକୁ ବୁଝିବା ସେମିତି କିଛି କଷ୍ଟ ନୁହେଁ । ଏହାକୁ କେବଳ ଅନୁମାନ କରିବା କଥା । ଜଣେ ଯଦି ଚୁଲ୍ଲୀ ପାଖରେ ବସି ଚୁଲ୍ଲୀ ଜାଳେ, ତେବେ ତାକୁ ପାଞ୍ଚମିନଟ୍ ସମୟ ଘଣ୍ଟାଏ ଭଳି ଲାଗିବ । ଜଣେ ଯଦି ଗୋଟିଏ ସୁନ୍ଦରୀ ଝିଅ ପାଖରେ ନଦୀକୂଳରେ ବସି ଗପସପ କରେ ତେବେ ଘଣ୍ଟାଏ ସମୟ ତାକୁ ପାଞ୍ଚମିନଟ ଭଳି ଲାଗିବ । ଏହା ଲାଗିବ କି ନାହିଁ ? ଏଇ ହେଲା ମୋ ଆପେକ୍ଷିକ ତଥ୍ୟର ସାରମର୍ମ ।"

## ଆଠ

"ଯେ କୌଣସି ତ୍ରିଭୁଜର ଗୋଟିଏ ବାହୁ ଅନ୍ୟ ଦୁଇବାହୁର ସମଷ୍ଟି ଠାରୁ କମ୍ ।" ପଢୁଁ ପଢୁଁ ସେ ଯୁଗର ମିଶରର ରାଜପୁତ୍ର ଟଲେମୀ ପ୍ରଥମ ପଢ଼ାଉଥିବା ଶିକ୍ଷକ ଇଉକ୍ଲିଡ୍‌ଙ୍କୁ ପଚାରିଲେ, "ମହାଶୟ, ଆପଣ ପଢ଼ାଉଥିବା ପାଠ ଅତି କଠିନ । ଏହା ମୋ ଦ୍ୱାରା ହୋଇପାରିବନି । ଜ୍ୟାମିତି ପଢ଼ିବା ପାଇଁ ଆଉ କିଛି ସହଜିଆ ବାଟ କ'ଣ ନାହିଁ ?"

ଇଉକ୍ଲିଡ୍ କହିଲେ, "ମହାମାନ୍ୟ ଯୁବରାଜ, ଜ୍ୟାମିତି ଅଧ୍ୟୟନ ପାଇଁ ସେମିତି କିଛି ରାଜକୀୟ ପଥ ନାହିଁ, There is no royal road to Geometry."

## ନଅ

ଆଲବର୍ଟ ଆଇନଷ୍ଟାଇନଙ୍କ ଦ୍ୱିତୀୟ ପତ୍ନୀ ଏଲସା ପଦାର୍ଥ ବିଜ୍ଞାନ ସମ୍ପର୍କରେ କିଛି ଜାଣି ନଥିଲେ । ପ୍ରଥମ ସ୍ତ୍ରୀ ଭଳି ସେ ବିଦୁଷୀ ନଥିଲେ । ଆଇନଷ୍ଟାଇନଙ୍କ ଘରକୁ ଯେତେ ଆଗନ୍ତୁକ ଓ ଅତିଥିମାନେ ଆସୁଥିଲେ, ସେ ସମସ୍ତଙ୍କ ଅତିଥିସତ୍କାର କରିବା

ତାଙ୍କର ବଡ଼ କର୍ତ୍ତବ୍ୟ ଥିଲା । ତାଙ୍କୁ ଆଗନ୍ତୁକମାନଙ୍କ ଭିତରୁ କେତେକ ପଚାରୁଥିଲେ ଆଇନଷ୍ଟାଇନଙ୍କ ଗବେଷଣା ସମ୍ବନ୍ଧରେ କିଛି କହିବା ପାଇଁ । ସେ ତ ଆଇନଷ୍ଟାଇନଙ୍କ ଗବେଷଣା ବିଷୟରେ କିଛି ଜାଣିନାହାନ୍ତି, ତେଣୁ ସେମାନଙ୍କୁ କ'ଣ ଉତ୍ତର ଦେବେ, ସେଇ କଥା ଦିନେ ଆଇନଷ୍ଟାଇନଙ୍କୁ ପଚାରିଲେ । ତେଣୁ ତାଙ୍କୁ ଆପେକ୍ଷିକ ତଥ୍ୟ ସମ୍ବନ୍ଧରେ ବୁଝାଇଦେବାକୁ ଆଇନ୍‌ଷ୍ଟାଇନଙ୍କୁ ସେଦିନ ଅନୁରୋଧ କଲେ ।

ଆଇନଷ୍ଟାଇନ ଦେଖିଲେ, ଏହା ଏକ କଷ୍ଟକର କଥା । ପଦାର୍ଥବିଜ୍ଞାନ ପଢ଼ି ନଥିବା ତାଙ୍କ ସ୍ତ୍ରୀଙ୍କୁ କିପରି ତାଙ୍କର ଏତେବଡ଼ ଜଟିଳ ତଥ୍ୟକୁ ବୁଝାଇବେ । ଚିନ୍ତାକଲେ କ'ଣ କରିବେ । ହଠାତ୍ ଏହି ସମୟରେ ଏକ ବୁଦ୍ଧି ତାଙ୍କ ମୁଣ୍ଡକୁ ଦୂକିଲା । ସେ ତତ୍‌କ୍ଷଣାତ୍ କହି ପକାଇଲେ, "ଦେଖ ଏଲସା, ତୁମକୁ ଯଦି କେହି ଆସି କହେ ମୋ ଆପେକ୍ଷିକ ତଥ୍ୟ ସମ୍ବନ୍ଧରେ କିଛି କହିବା ପାଇଁ, ତେବେ ତୁମେ କହିବ—ହଁ, ମୁଁ ଜାଣିଛି ଯେ କିନ୍ତୁ କିଛି କହିବନି । କାରଣ ଏଥିରେବହୁତ ଗୋପନୀୟ ବିଷୟ ଅଛି । ଏହାର ବ୍ୟାଖ୍ୟା କଲେ ସେଇ ଗୋପନୀୟତା ଖୋଲିଯିବ । ତେଣୁ ଆଇନଷ୍ଟାଇନ ତାଙ୍କୁ ମନା କରିଛନ୍ତି, ଏହି ତଥ୍ୟ ସମ୍ବନ୍ଧରେ କେଉଁଠି କିଛି କହିବା ପାଇଁ ।"

## ଦଶ

ପୃଥିବୀରେ ବିଜ୍ଞାନରେ ସବୁଠାରୁ ବଡ଼ ସମ୍ମାନ ହେଉଛି ନୋବେଲ ପୁରସ୍କାର । ଯେଉଁମାନେ ବିଜ୍ଞାନର କୌଣସି ଶାଖାରେ ନୋବେଲ ପୁରସ୍କାର ପାଇଛନ୍ତି, ଆମେ ସେମାନଙ୍କୁ ଜଣେ ବଡ଼

ବୈଜ୍ଞାନିକ ବୋଲି ଧରିନେଉ । ଆମେ ବେଳେବେଳେ ଖୁବ୍ ବଡ଼ ବୈଜ୍ଞାନିକଙ୍କ ନାଁ ଶୁଣୁ । କିନ୍ତୁ ସେ ନୋବେଲ ପ୍ରାଇଜ ପାଇ ନାହାନ୍ତି ବୋଲି ଶୁଣିଲେ ସେହି ବୈଜ୍ଞାନିକଙ୍କ ବରିଷ୍ଠତା ପ୍ରତି ଆମର ସନ୍ଦେହ ଜାତ ହୁଏ । ଏହା କିନ୍ତୁ ପ୍ରକୃତରେ ଠିକ୍ ନୁହେଁ । ଉଦ୍ଭିଦବିଜ୍ଞାନ, ପ୍ରାଣୀବିଜ୍ଞାନରେ ବହୁତ ବଡ଼ ବଡ଼ ବୈଜ୍ଞାନିକ ଅଛନ୍ତି, କିନ୍ତୁ ସେମାନେ ନୋବେଲ ପୁରସ୍କାର ପାଇ ନାହାନ୍ତି । ଆମେ ଯଦି ଭାବୁଁ ସେମାନେ ବଡ଼ ବୈଜ୍ଞାନିକ ନୁହଁନ୍ତି, ତେବେ ଭୁଲ ହେବ । କାହିଁକି ନା ଉଦ୍ଭିଦବିଜ୍ଞାନ ବା ପ୍ରାଣୀବିଜ୍ଞାନରେ ନୋବେଲ ପୁରସ୍କାର ଦେବା ବ୍ୟବସ୍ଥା ନାହିଁ । ନୋବେଲ ପୁରସ୍କାର ଦେବା ବ୍ୟବସ୍ଥା କେବଳ ତିନୋଟି ବିଭାଗ ଯଥା ରସାୟନବିଜ୍ଞାନ, ପଦାର୍ଥବିଜ୍ଞାନ ଏବଂ ଚିକିତ୍ସା ଓ ଶରୀର ବିଜ୍ଞାନରେ ଦେବାର ବ୍ୟବସ୍ଥା ଅଛି । ଏତଦ୍‌ବ୍ୟତୀତ ଅନ୍ୟ ବିଭାଗରେ ନାହିଁ ବୋଲି ସେସବୁ ବିଜ୍ଞାନର ଗୁରୁତ୍ୱ ନାହିଁ ବା ସେ ବିଭାଗରେ କାର୍ଯ୍ୟ କରୁଥିବା ବୈଜ୍ଞାନିକମାନଙ୍କର ଅବଦାନ ନୋବେଲ ପ୍ରାଇଜ୍ ପାଇବା ଉପଯୋଗୀ ନୁହେଁ, ଏହା ଭାବିବା ଭୁଲ । ଉଦ୍ଭିଦ ତଥା ପ୍ରାଣୀବିଜ୍ଞାନରେ ଏମିତି ଆବିଷ୍କାର ହୋଇଛି ଯାହା ନୋବେଲ ପୁରସ୍କାର ପାଇଁ ଯୋଗ୍ୟ । ହେଲେ ସେମାନେ ନୋବେଲ ପୁରସ୍କାର ପାଉ ନାହାନ୍ତି । ତେଣୁ ନୋବେଲ ପୁରସ୍କାର ପାଇବା ନ ପାଇବା ବଡ଼ ବୈଜ୍ଞାନିକ ବୋଲି ଜାଣିବାର ମାପକାଠି ନୁହେଁ ।

ଇଏ ଗଲା ନୋବେଲ ପୁରସ୍କାର ପାଇବା ନ ପାଇବା ବିଭାଗ କଥା । ନୋବେଲ ପୁରସ୍କାର ଦିଆଯାଉଥିବା ବିଭାଗରେ କେତେ ବଡ଼ ବୈଜ୍ଞାନିକ ନୋବେଲ ପୁରସ୍କାର ପାଇ ନାହାନ୍ତି । ଏହି ପୁରସ୍କାର ପାଇ ନାହାନ୍ତି ବୋଲି ଯେ ସେମାନେ ବଡ଼ ବୈଜ୍ଞାନିକ

ଜୁହଁନ୍ତି , ଭାବିବା ଭୁଲ । ଟମାସ ଆଲଭା ଏଡ଼ିସନ ପଦାର୍ଥ ବିଜ୍ଞାନରେ ଅତି ବିଖ୍ୟାତ ବୈଜ୍ଞାନିକ । ସେ ଏହି ବିଭାଗର ବିଭିନ୍ନ ଶାଖାରେ ଯେତେ ସବୁ ଉଦ୍ଭାବନ କରିଛନ୍ତି, ତାହା ଯୋଗୁଁ ଯୁଗ ବଦଳିଯାଇଛି । ସେ ନୋବେଲ ପୁରସ୍କାର ପାଇ ନାହାଁନ୍ତି । ଏଡ଼ିସନ ଖାଲି ଫନୋଗ୍ରାଫ୍ ଉଦ୍ଭାବନ କରି ପ୍ରସିଦ୍ଧି ଅର୍ଜନ କରିବା, ଇଲେକ୍ଟ୍ରିକ ବଲ୍‌ବ୍, ଚଳଚ୍ଚିତ୍ର, କଥାକୁହା ଚଳଚ୍ଚିତ୍ରରେ ତାଙ୍କ ଅବଦାନ ଅସୀମ । ଫନୋଗ୍ରାଫ ଭଳି ଇଲେକ୍ଟ୍ରିକ ବଲ୍‌ବ୍, ଚଳଚ୍ଚିତ୍ର ଆଦି ଯୁଗାନ୍ତକାରୀ ଉଦ୍ଭାବନ । ଏସବୁ ଉଦ୍ଭାବନ ଯୋଗୁଁ ଯୁଗ ବଦଳି ଯାଇଛି । ସେଇ ଏଡ଼ିସନ ନୋବେଲ ପୁରସ୍କାର ପାଇନାହାନ୍ତି । କାହିଁକି, ଏହାର କାରଣ କ'ଣ ?

୧୯୧୨ ମସିହା ପାଇଁ ପଦାର୍ଥବିଜ୍ଞାନରେ ଏଡ଼ିସନ୍ ଓ ନିକୋଲ ଟେସଲଙ୍କ ନାମ ବଛା ଯାଇଥିଲା । ସେ ଦୁଇଜଣ ସେ ବର୍ଷର ନୋବେଲ ପୁରସ୍କାର ପାଇଥାନ୍ତେ । କିନ୍ତୁ ଏଡ଼ିସନଙ୍କ ସହିତ ନୋବେଲ ପୁରସ୍କାର ନେବା ପାଇଁ ଟେସଲ ମନା କରି ଦେଲେ । କାରଣ ଏଡ଼ିସନଙ୍କ ସହିତ ଟେନ୍‌ସଲଙ୍କ ବ୍ୟକ୍ତିଗତ କଳିକଜିଆ ଥିଲା, ନୋବେଲ ପରିଷଦ ଏହା ଜାଣିବାରୁ ସେ ବର୍ଷ ଏ ଦୁଇଜଣଙ୍କୁ ନୋବେଲ ପୁରସ୍କାର ଦିଆ ନ ଯାଇ ଅପେକ୍ଷାକୃତ କମ୍ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ପାଇଁ ସୁଇଡ଼େନର ଗୁଷ୍ଟାଭ ଡ଼ଲେନଙ୍କୁ ଦିଆଗଲା । ଏଡ଼ିସନଙ୍କ ଆବିଷ୍କାର ଭଳି ନିକୋଲ ଟେନ୍‌ସ୍‌ଲଙ୍କ ବୈଜ୍ଞାନିକ ଅବଦାନ ଖୁବ୍ ବିରାଟ । ହେଲେ ବିଭିନ୍ନ ଜଗତର ଏହି ଦୁଇଜଣ ପ୍ରଖ୍ୟାତ ବୈଜ୍ଞାନିକ ନିଜ ନିଜ ଭିତରେ କଳିକଜିଆ ହେତୁ ଏତେ ବଡ଼ ସମ୍ମାନରୁ ବଞ୍ଚିତ ହେଲେ ।